ପ୍ରଥମ ପ୍ରକାଶ ୧୯୭୧

ପ୍ରକାଶକ
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ,
ବାଲୁବଜାର, କଟକ-୨

ମୁଦ୍ରଣ
ଶ୍ରୀ ଦିବାକର ମିଶ୍ର
ଗୋସ୍ୱାମୀ ପ୍ରେସ,
ଆଲମଚାନ୍ଦ ବଜାର, କଟକ-୨

ମୂଲ୍ୟ ଟ ୬-୦୦

# SETU

(A Collection of Short Stories)

*By* :
Sri B. Tripathi, I.A.S.

*Published by*
Sri P. Misra
Vidyapuri
Balubazar, Cuttack-2

*Printed at*
Goswami Press,
Cuttack-2

1st Edition—1971

**Price Rs. 6·00**

କ୍ଷୁଦ୍ର ଗଳ୍ପ ସମ୍ବନ୍ଧରେ ଜଣେ ପ୍ରଖ୍ୟାତ ଇଂରେଜ ସାହିତ୍ୟିକଙ୍କର ଉକ୍ତିର ମର୍ମ ଏହିପରି

ପ୍ରତ୍ୟୁଷର ଦୂର୍ବାଦଳରେ ଶିଶିରବିନ୍ଦୁକୁ ନିରୀକ୍ଷଣ କଲେ ଦେଖିବେ ସେଥିରେ ଯେ ଚତୁର୍ଦ୍ଦିଗର ତରୁଲତାର ଛାଇ ପଡ଼ିଛି ତାହା ନୁହେଁ, ନୀଳ ଆକାଶର କିୟଦଂଶ ମଧ୍ୟ ସେ ଶିଶିରମୁକୁରରେ ପ୍ରତିବିମ୍ବିତ !

ଏହି ପୁସ୍ତକରେ ସଂଗୃହୀତ ଗଳ୍ପଗୁଡ଼ିକ ମଣିଷ ଜୀବନର ନିତିଦିନିଆ ଘଟଣାଗୁଡ଼ିକୁ ଆଶ୍ରୟ କରି ଗଢ଼ି ଉଠିଛି । ପାରିପାର୍ଶ୍ୱିକର ବାସ୍ତବତା ସଙ୍ଗେ ଏକ ସ୍ୱପ୍ନଶ୍ୱରଣର ସମନ୍ୱୟ ଆଣିବାକୁ ଯାଇ ତାହାରି କ୍ଷୁଦ୍ର ପରିସର ଭିତରେ ମୁଁ ଖୋଜିବୁଲିଛି ଶାଶ୍ୱତ ଓ ସୁନ୍ଦରର ଏକ ଅପରୂପ ପ୍ରତିଛାୟା ।

କଟକ
କୁମାରପୂର୍ଣ୍ଣିମା
୧୯୭୧

ଲେଖକ

ଶ୍ରୀ ବିଭୂତିଭୂଷଣ ତ୍ରିପାଠୀ, ଆଇ. ଏ. ଏସ. ଗାଳ୍ପିକ ହିସାବରେ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ଅତି ପରିଚିତ ଓ ଲବ୍ଧପ୍ରତିଷ୍ଠ । ଗଳ୍ପ ଲେଖାକୁ ପେଶା ଭବରେ ଗ୍ରହଣ ନ କରି ସେ ତାକୁ ତାଙ୍କ କଳାପ୍ରିୟ ଜୀବନର ମର୍ମପ୍ରକାଶ ବୋଲି ମନେକରନ୍ତି । ତାଙ୍କ ଗଳ୍ପଗୁଡ଼ିକର ବିଶେଷତ୍ୱ ହେଲା — ଅନ୍ୟ ଆଖିରେ ସଚରାଚର ପଡିପାରୁ ନ ଥିବା ଦୈନନ୍ଦିନ ଜୀବନର ସାଧାରଣ ଘଟଣା ମଧ୍ୟରେ ଏକ ସୂକ୍ଷ୍ମ ଓ ଚିରନ୍ତନ ରୂପ ଫୁଟାଇବା, ଯାହାକି ପାଠକ-ଚିତ୍ତକୁ ଅଭିଭୂତ କରେ ।

କ୍ଷୁଦ୍ର ପରିସର ମଧ୍ୟରେ ପ୍ରତ୍ୟେକଟି ଗଳ୍ପ ସ୍ୱୟଂସମ୍ପୂର୍ଣ୍ଣ ଓ ତାହା କାଳୋତ୍ତୀର୍ଣ୍ଣ ହେବାର ଦାବୀ ରଖେ ।

ପ୍ରକାଶକ

# ସୂଚୀ

# ସେତୁ

ସେଦିନ ସଞ୍ଜବେଳେ କନଟ୍ ପ୍ଲେସ୍‌ରେ ଘୁରୁ ଘୁରୁ ହଠାତ୍ ଗୋଟାଏ 'ପରଫ୍ୟୁମ୍' ଦୋକାନକୁ ପଶିଗଲି । ଏତେ ଦୋକାନ ଥାଉ ଥାଉ ଏଇ ସେଣ୍ଟ୍ ପାଉଡର ଦୋକାନକୁ ପଶିଯିବାର ବିଶେଷ କିଛି କାରଣ ନ ଥିଲା । ସେଣ୍ଟ୍, ଲେଭେଣ୍ଡର ବ୍ୟବହାର କରିବା ମୋର ପ୍ରାୟ ଅଭ୍ୟାସ ନୁହେଁ । କିନ୍ତୁ ମୋର ଘ୍ରାଣଶକ୍ତିଟା ବୋଧହୁଏ ଅତ୍ୟନ୍ତ ତୀକ୍ଷ୍ଣ । ପାର୍ଟି ବା ଜନସମାବେଶରେ କେଉଁଠି ଟିକିଏ ଭଲ ଗନ୍ଧର ସନ୍ଧାନ ପାଇଲେ ମୋର ଚେତନା ସଜାଗ ହୋଇଉଠେ—ମନେ ମନେ ଅନୁସନ୍ଧାନ କରି ବାରିନିଏ କିଏ ସେ ଗନ୍ଧର ଉତ୍ସ । ପୁରୁଷ ହେଉ ବା ନାରୀ ହେଉ— ତାହାର ଚେହେରା ଓ ବ୍ୟକ୍ତିତ୍ୱ ସଙ୍ଗେ ମିଳାଇନିଏ ନିଃସୃତ ହେଉଥିବା ଗନ୍ଧର ଏଫେକ୍ଟ । ଯଦି ଖାପ୍ ଖାଇଗଲା, ମନେ ମନେ ଖୁସି ହୁଏ; ଗନ୍ଧର ଉତ୍ସ ସେ ପୁରୁଷ ବା ନାରୀକୁ ମନେ ମନେ ଆନ୍ତରିକ ଅଭିନନ୍ଦନ ଜଣାଏ ତାହାର ରୁଚିବୋଧ ପାଇଁ ।

ସେହିପରି ପାର୍ଶ୍ୱବର୍ତ୍ତିନୀ କେହି ତରୁଣୀର ଅଙ୍ଗାବରଣରୁ ଯଦି ଭସିଆସେ କୌଣସି ଶସ୍ତା ଉଗ୍ର ଗନ୍ଧ, ମୁଁ ଆତଙ୍କିତ ହୋଇଉଠେ—ଯେତେ ଲାସ୍ୟମୟୀ ସୁନ୍ଦରୀ ହେଉ ପଛକେ ସେ ନାରୀକୁ ମୁଁ ମନେ ମନେ କୃପା କରେ, ଏପରିକି ଘୃଣା । ମୋ ମନରେ ଏକ ଅଦ୍ଭୁତ ଧାରଣା ଦୃଢ଼ ହୋଇ ରହିଯାଇଛି—ଅନ୍ତରର ପରିଚ୍ଛନ୍ନତାର ପ୍ରକାଶ ଦେହର ସୌରଭରେ—ଯେଉଁ ସୌରଭ କ୍ଷେତ୍ରବିଶେଷରେ ହୁଏତ ନିର୍ଭର କରେ ଠିକ୍‌ଠିକ୍ ସାବୁନ୍, ସେଣ୍ଟ୍, ପାଉଡରର ରୁଚିସମ୍ପନ୍ନ ନିର୍ବାଚନ ଉପରେ ।

କନଟ୍ ପ୍ଲେସର ଏଇ ପ୍ରସାଧନ ଦୋକାନଟାକୁ ପଶିଯିବାର ବୋଧହୁଏ ଆଉ ଏକ କାରଣ ଥିଲା । ସୁସଜ୍ଜିତ ଦୋକାନଟିଏ—କାଚ ଆଲମାରୀ, କାଚ କାଉଣ୍ଟର ନିଅନ ଆଲୋକରେ ଝଲମଲ କରୁଛି । କାଉଣ୍ଟର ପଛପଟେ ଏକ ଲାବଣ୍ୟମୟୀ ତରୁଣୀ, ଏ ପଟେ କେତେକ ପୁରୁଷ-ନାରୀ-କ୍ରେତା କାଉଣ୍ଟର ଉପରକୁ ଝୁଙ୍କି ପଡ଼ିଛନ୍ତି;ତରୁଣୀ କ୍ଷିପ୍ର ହସ୍ତରେ ସେଣ୍ଟ୍, ପାଉଡର, ଲେଭେଣ୍ଡର ଶିଶି ପଛପଟ ଆଲମିରାରୁ ବାହାର କରିଆଣି କାଉଣ୍ଟରରେ ଜମା କରୁଛନ୍ତି । ମୃଦୁ କଣ୍ଠରେ କ୍ରେତାମାନଙ୍କ ଗୃହିଦା ବୁଝିନେଉଛନ୍ତି । ଝୁରୁ ଝୁରୁ ବାଳ ପଙ୍ଖା ପବନରେ ଇତସ୍ତତଃ ହେଉଛି—ମଝିରେ ମଝିରେ ହାତ ଟେକି କପାଳ ଉପରୁ ସେଇ ଚୂର୍ଣ୍ଣାଳକ ସଜାଡ଼ି ନେଉଛନ୍ତି । ଗୌର କବଜି ଉପରେ ଛୋଟ ଘଡ଼ିଟି ଚିକ୍ ଚିକ୍ କରି ଉଠୁଛି । କାଉଣ୍ଟରର ଏକ କୋଣରେ ଠିଆ ହୋଇ ଦେଖୁଥିଲି—ଭରି ଭଲ ଲାଗୁଥିଲା ଏଇ ବ୍ୟସ୍ତ ତରୁଣୀଙ୍କୁ ଲକ୍ଷ୍ୟ କରିବାକୁ । ଚମତ୍କାର ରଙ୍ଗ, ଅଦ୍ଭୁତ ନରମ, ମସୃଣ ତ୍ୱକ୍—ସାରା ଅଙ୍ଗରୁ ଲାବଣ୍ୟ ଝରିପଡୁଛି ଯେପରି ।

ମୋ ପାଖକୁ ଘୁଞ୍ଚିଆସି ତରୁଣୀଟି ଅନୃଢରେ ପଗ୍ୱରିଲେ ମୋର କ’ଣ ଦରକାର । ଏକ ଅଜଣା ଗନ୍ଧର ଢେଉ ମୋର ଚେତନା ଉପରେ ଯେପରି ଭାଙ୍ଗିପଡ଼ିଲା ।

କହିଲି, ମୋର ଗୋଟାଏ ଖୁବ୍ ଚମତ୍କାର ସେଣ୍ଟ୍ ଦରକାର, ନିର୍ବାଚନ ଭର ତରୁଣୀଙ୍କର । ‘ଓ’—ଅଳ୍ପ ହସି ସେ ଫେରିଗଲେ ।

ବଡ଼ ବଡ଼ ଆଲମିରାରୁ ସ୍ଲାଇଡ଼ିଂ ଡୋର ଫିଟାଇ ଆଠ ଦଶ ଛୋଟ ଛୋଟ ଶିଶି ଆଣି ମୋ ଆଗରେ ଥୋଇଲେ—ପ୍ରତ୍ୟେକଟି ବିଦେଶୀ, ମହାର୍ଘ; ପ୍ରତ୍ୟେକ ଶିଶିର ଉପର ଠିପି ଖୋଲି ମୋ ନାକ ପାଖରେ ଧରିଲେ ! ମୃଦୁ ମଧୁର କଣ୍ଠରେ ପ୍ରତ୍ୟେକଟିର ବିଶେଷତ୍ୱ ପରିବେଷଣ କଲେ ।

ନା, କେଉଁଟା ହେଲେ ମୋ ଅନ୍ତରକୁ ସ୍ପର୍ଶ କରୁନାହିଁ । ମୋର ଶିରାପ୍ରଶିରାରେ ଯେଉଁ ଗନ୍ଧ ସଞ୍ଚରିତ ହେଉଛି ତାର ସନ୍ଧାନ ଏଇ ବିଦେଶୀ ବହୁମୂଲ୍ୟ ସେଣ୍ଟ୍‌ରେ ମିଳିଲା ନାହିଁ । ତରୁଣୀଙ୍କର ଜିଦ୍ ବଢ଼ିଗଲା—ଆହୁରି ଦାମୀ ଆହୁରି ନାମକରା ସେଣ୍ଟ୍ ଶିଶି ଆଣି ମୋ ଆଗରେ ଜମାଇଲେ । ନା, ମୁଁ ଯାହା ଖୋଜୁଛି ତା' ପାଉନାହିଁ; ଅଥଚ ମୋ ନାକରେ, ସମଗ୍ର ଚେତନାରେ ସେ ଗନ୍ଧ ଲାଗିରହିଛି ।

ହଠାତ୍ ସେ ରହସ୍ୟର ସମାଧାନ ହେଲା । କଣ୍ଠରେ ନମ୍ରତା ଫୁଟାଇ ଶଙ୍କିତ ଚିତ୍ତରେ କହିଲି, "କିଛି ଯଦି ମନେ ନ କରନ୍ତି, ଆପଣ ଯେଉଁ ସେଣ୍ଟ୍‌ଟା ବ୍ୟବହାର କରିଛନ୍ତି, ମୋର ଠିକ୍ ସେଇଟା ଦରକାର ।"

ତରୁଣୀ ପ୍ରଥମେ ଟିକିଏ ଅପ୍ରତିଭ ହୋଇ, ପରେ ହସିଉଠି କହିଲେ– "ଓ, ଏଟା ତ ସେଭେନ୍‌ଥ ହେଭନ୍; ଅବଶ୍ୟ ବିଦେଶୀ, କିନ୍ତୁ ତା'ଠାରୁ ଆହୁରି ଦାମୀ ଓ ନାମକରା ସେଣ୍ଟ୍ ତ ମୁଁ ଆପଣଙ୍କୁ ଦେଖାଇଲିଣି ।"

"ମୋର କିନ୍ତୁ ଠିକ୍ ସେଇ ସେଣ୍ଟଟି ଦରକାର ।"

ତରୁଣୀଙ୍କର କପୋଳ ଟିକିଏ ନାଲ ହୋଇଉଠିଲା ପରା । ଓଠ ଟିକିଏ ଥରିଉଠିଲା ଯେପରି ।

"ଆଚ୍ଛା, ଯେମେତି ଆପଣଙ୍କ ମର୍ଜି । କେତେଟା ଦେବି ?"

"ଗୋଟାଏ ।"

"ଗୋଟାଏ ? ଆପଣ ଯଦି ସେ ସେଣ୍ଟ୍‌ଟାକୁ ଏତେ ପସନ୍ଦ କରନ୍ତି ଦି ତିନିଟା ଶିଶି ନେଇଯାଆନ୍ତୁ ନା । ହୁଏତ ଆଉ ମିଳି ନ ପାରେ । ଫରେନ ମାର୍କେଟର ଯା ଅବସ୍ଥା....।"

"ନା ମିସ୍....ମିସ୍........

"କୌଲ୍"

"ଧନ୍ୟବାଦ୍ ମିସ୍ କୌଲ୍....ପସନ୍ଦ କରେ ବୋଲି କେବଳ ଗୋଟିଏ ନେବି । କୃପଣ ଭଳି ତାକୁ ସଞ୍ଚି ରଖି ଟିକିଏ ଟିକିଏ ବ୍ୟବହାର କରିବି ।"

ତରୁଣୀଙ୍କର ମସୃଣ କପୋଳରେ ଏକ ଝଲକ ନାଲ ଆଭ ଫୁଟି-ଉଠିଲା । ମୃଦୁ ହସି ସେ ପଚାରିଲେ, "ଆଉ କିଛି ?"

କହିଲି, "ଯା ଖୁସି ଦିଅନ୍ତୁ,—ଗୋଟାଏ ଯୋଡ଼ାଏ ପାଉଡର, ଅଡିକୋଲନ୍......

"ଆଚ୍ଛା, ଆଚ୍ଛା" ତରୁଣୀଙ୍କର ଓଠରେ ଏକ ଚମତ୍କାର ହସ........ ସେମ୍ପୁ କରା ଝୁରୁ ଝୁରୁ ବାଳ କାନ୍ଧ ଉପରେ ଭାଙ୍ଗିପଡ଼ିଛି ।........

ପେକେଟ୍‌ଟା ହାତରେ ନେଇ, ବିଲ୍ ବୁଝାଇ, ତରୁଣୀଙ୍କୁ ଧନ୍ୟବାଦ ଜଣାଇ ବାହାରକୁ ଆସିଲି । ସେତେବେଳକୁ ପ୍ରାୟ ସାଢ଼େ ସାତ । ଦୋକାନପତ୍ର ବନ୍ଦ ହୋଇ ଆସିଲାଣି । କନଟ ପ୍ଲେସ୍ କ୍ରମେ ନିର୍ଜନ ହୋଇଆସୁଛି ।

ଟେକ୍‌ସି ଧରି ହୋଟେଲକୁ ଫେରୁଛି—ପେକେଟ୍‌ଟି ସେମିତି ହାତରେ ଧରିଛି । ମନ ଭିତରେ ଅନେକ ଭଙ୍ଗା, ଅନେକ ସଙ୍ଗୀତର ମୂର୍ଚ୍ଛନା । ହଠାତ୍ ଅନୁଭବ କଲି ପେକେଟ ଭିତରେ ଯେପରି ଅନ୍ୟାନ୍ୟ ଜିନିଷ ମଧ୍ୟରେ ଦୁଇଟି ଛୋଟ ଶିଶି ! ଏକା ସାଇଜ୍‌ର । ଆରେ, ଏ ତ ସେଭେନ୍‌ଥ ହେଭନ୍‌ର ଶିଶି । ମୁଁ ତ ଗୋଟାକର ଦାମ୍ ଦେଲି—ତରୁଣୀ ଦୁଇଟା ଶିଶି ଦେବାକୁ ପ୍ରସ୍ତାବ କରୁଥିଲେ—ଭୁଲରେ ଦୁଇଟା ଶିଶି ଦେଇଦେଲେ ନାହିଁ ତ ! ପେକେଟ୍‌ଟାକୁ ଖୋଲିପକାଇଲି—ଟେକ୍‌ସିର ଭିତର ଆଲୁଅ

ଜାଳି ଦେଖିଲି, ଯାହା ଅନୁମାନ କରିଥିଲି ତା' ଠିକ୍ । ଭୁଲରେ ଦି'ଟା ସେଭେନ୍‌ଥ୍ ହେଭନ୍‌ର ଶିଶି ଚାଲିଆସିଛି । ବହୁତ ଦାମ୍ ଏ ସେଣ୍ଟର । ଦ୍ୱିତୀୟ ଶିଶିର ହିସାବ କେମିତି ବୁଝାଇବେ ମିସ୍ କୌଲ ? କ'ଣ ଭାବିବେ ଏଇ କ୍ରେତାଟିକୁ ? ଠକ ? ଫ୍ରଡ ? ଦୋକାନ ତ ବନ୍ଦ ହୋଇ ସାରିବଣି । ଟେକ୍‌ସି ସ୍ପିଡ୍‌ରେ ଚାଲିଛି—ବହୁଦୂର ଚାଲି ଆସିଲାଣି ।... ଫେରିବି ? କ'ଣ କରିବା ମୋର ଉଚିତ ? କାଲି ଭୋର ପ୍ଲେନ୍‌ରେ ଫେରିଯିବାକୁ ହେବ । ଟିକଟ କିଣା ସରିଛି—ସିଟ୍ ରିଜର୍ଭ ହୋଇ-ସାରିଛି । ଆଉ ତ ଅନେକ ଦିନ ପର୍ଯ୍ୟନ୍ତ ସେ ଦୋକାନକୁ ଯାଇ ହେବ ନାହିଁ । ଅନେକ ଦିନ ପର୍ଯ୍ୟନ୍ତ ତ ମୋର ଆଉ ଦିଲ୍ଲୀ ଆସିବାର ନାହିଁ । ଏକ ଚମତ୍କାର ଅନୁଭୂତି, ଚିତ୍ତର ଏକ ଅନାବିଳ ଆନନ୍ଦ ପରିବର୍ତ୍ତରେ ଏଇ ପ୍ରବଞ୍ଚନା ! !

ହୋଟେଲ୍‌ରେ ଟେକ୍‌ସି ଯା ଭିତରେ ପହଞ୍ଚିଗଲାଣି । ଭଡ଼ା ବୁଝାଇ ରୁମ୍‌କୁ ଗଲି । ବନ୍ଧୁ ଅପେକ୍ଷା କରୁଥିଲେ । ସବୁ କହି ବୁଦ୍ଧି ମାଗିଲି । ବନ୍ଧୁ କିଛିକ୍ଷଣ ଚୁପ୍ ରହି ମୋ ଆଡ଼କୁ କରୁଣ ଦୃଷ୍ଟିରେ ଚାହିଁ କହିଲେ, "ଭୂପତି, ତୁମେ କଲେଜରେ ଯେପରି ଅପରିପକ୍ୱ ଥିଲ ଠିକ୍ ସେହି ଅବସ୍ଥାରେ ରହିଯାଇଛ । କୌଣସି ଉନ୍ନତି ହୋଇନାହିଁ । ଯଦି ସେ ଅଧିକା ଦାମୀ ସେଣ୍ଟ ଶିଶିଟା ଏୟାର ଲଗେଜ ପାଇଁ ଅଧିକ ବୋଝ ହୋଇଯାଉଛି ମୋତେ ସେଇଟା ଦେଇପକେଇ ଚିନ୍ତାରୁ ମୁକ୍ତ ହୁଅ, ବନ୍ଧୁ !"

ହୋଟେଲ୍ ମେନେଜରଙ୍କ ଶରଣାପନ୍ନ ହେଲି—"ଦେଖନ୍ତୁ, ପରଫ୍ୟୁମ୍ ସପ୍‌ରୁ ଭୁଲରେ ଅଧିକା ଗୋଟାଏ ସେଣ୍ଟ୍ ମୋ ପେକେଟ୍‌ରେ ଚାଲି-ଆସିଛି । ମୁଁ କାଲି ସକାଳେ ଚାଲିଯାଉଛି । କିଛି ଯଦି ମନେ ନ କରନ୍ତି ଆପଣ ସେଟା ଦୋକାନରେ ଫେରାଇଦେଇ ପାରିବେ କି ? ଏଇ ରଖନ୍ତୁ ସେଣ୍ଟ୍ ଶିଶିଟା—ଏଇ ଟେକ୍‌ସି ଭଡ଼ା ।"

ମେନେଜର ଆଶ୍ଚର୍ଯ୍ୟ ହୋଇ ମୋତେ କିଛି ସମୟ ଦେଖିନେଲେ । ମୁଁ ଜଣେ ହୋଟେଲର ପୁରୁଣା ଗରାଖ । ବହୁବାର ଆସି ଏଠି

ରହିଛି । ମୋ କଥାଟା ଠିକ୍ ଫୋପାଡ଼ି ଦେଇ ପାରୁନାହାନ୍ତି । ଉତ୍ତରରେ କହିଲେ—

"ଆଚ୍ଛା, ଚେଷ୍ଟା କରିବି—କିନ୍ତୁ କେସମେମୋ କାହିଁ ?" ଏ ପକେଟ ସେ ପକେଟ ଦରାଣ୍ଡି କେସମେମୋ ପାଇଲି ନାହିଁ । ବୋଧହୁଏ ଟେକ୍‌ସିରେ ପଡ଼ିଯାଇଛି । ସେ କଥା କହିଲି । କନଟ୍ ପ୍ଲେସ୍‌ର ସେଇ ଦୋକାନଟିର ଅବସ୍ଥିତି ଚିତ୍ର ଆଙ୍କି ଦେଖାଇଦେଲି ।

ଶେଷରେ କହିଲି....,"ସେଲ୍‌ସ୍‌ଗାର୍ଲଙ୍କ ନାମ.....ମିସ୍ କୌଲ ।"

× × ×

ତା'ପର ଦିନ ସକାଳ ପ୍ଲେନରେ ଫେରିଆସିଲି ।

ଏହା ଭିତରେ ପ୍ରାୟ ବର୍ଷେ ଅତୀତ ହୋଇଯାଇଛି । ସେଦିନ ସଞ୍ଜର ସେଇ ଛୋଟ ଘଟଣାଟି ମନରୁ କେଉଁ ଦିନରୁ ପାସୋରିଗଲଣି । ମନେପଡ଼ୁଛି ହୋଟେଲ ମେନେଜର ଖଣ୍ଡେ ଚିଠି ଦେଇଥିଲେ । ସେ ଦୋକାନର ଠାବ କରିପାରିଲେ ନାହିଁ । ସେଣ୍ଟ୍‌ଟା ତାଙ୍କ ପାଖରେ ଅଛି......ପୁଣି କେବେ ଗଲେ ନେଇଆସିବି । ସେ ଚିଠିର ଉତ୍ତର ଆଉ ଦେଇନାହିଁ ।

ବର୍ଷକ ପରେ ପୁଣି ଦିଲ୍ଲୀ ଯାଇଥିଲି । ଆଉ ଗୋଟିଏ ହୋଟେଲରେ ଥିଲି । କାମ ସାରି ସନ୍ଧ୍ୟା ପ୍ଲେନରେ ଫେରୁଥିଲି ।

ଝରକା ପାଖ ସିଟ୍‌ରେ ଲମ୍ବହୋଇ ପଡ଼ି ମୁଁ ବାହାରକୁ ଚାହିଁ-ରହିଥିଲି । ଖାଇବା ପର୍ବ ସରିଯାଇଛି । ହୋଷ୍ଟେସ୍‌ମାନେ ବଡ଼ ଆଲୁଅ ନିଭାଇଦେଇ ନାଇଟ୍ ଲାଇଟ୍ ଲଗାଇଦେଇ ନିଜ ଜାଗାକୁ ଫେରି ଯାଉ-ଛନ୍ତି । ପ୍ଲେନ୍ ଭିତରେ ପ୍ରାୟ ସମସ୍ତ ଯାତ୍ରୀ ନିଜ ନିଜ ସିଟ୍‌ରେ ଆଖି ବୁଜି ପଡ଼ିଛନ୍ତି । ଜଣେ ଅଧେ ରିଡିଂ ଲାଇଟ୍ ଲଗାଇ ପଢୁଛନ୍ତି । ମୁଁ ଝରକାର ପର୍ଦ୍ଦା ଘୁଞ୍ଚାଇଦେଇ ମୁଗ୍ଧ ନେତ୍ରରେ ଦେଖୁଛି ଆକାଶର ଶୋଭା । ଚତୁର୍ଦ୍ଦିଗ ଜ୍ୟୋତ୍ସ୍ନାରେ ଝଲମଲ କରୁଛି । ଟିକିଏ ଝୁଙ୍କି ଚାହିଁଲବେଳକୁ ଦେଖାଯାଉଛି ତଳେ ପୁଞ୍ଜ ପୁଞ୍ଜ ଶୁଭ୍ର ମେଘ । ଉପରେ

ଦୁଇ ପକ୍ଷ ବିସ୍ତାର କରି ଆମର ବରାଟକାୟ ପ୍ଲେନ୍ ଉଡ଼ୁଛି ।........
ଇଞ୍ଜିନ୍‌ର ମସୃଣ ଗୁଞ୍ଜନରେ ଶକ୍ତି ଓ ନିରାପତ୍ତାର ନିର୍ଭରବାଣୀ ।

ମୋର ପ୍ରାଣତଳେ ଏକ ନବଗୁଞ୍ଜନ—ଏକ ବିସ୍ମୃତ ପୁଲକର ଅସ୍ପଷ୍ଟ ଆବେଶ କ୍ରମେ ଯେପରି ମୋତେ ଆଚ୍ଛନ୍ନ କରିପକାଉଛି । ମୋର ସ୍ନାୟୁ ଭିତରେ ତା'ର ପ୍ରଭବ କ୍ରମେ ଯେପରି ସଞ୍ଚରିତ ହେଉଛି ।

ପ୍ରାୟ ଅଜାଣତରେ ମୁଁ ହାତ ବଢ଼ାଇ ପେନେଲ୍‌ର ନବ୍‌ଟା ଟାଣି-ଦେଲି—ଦପ୍ କରି ଛୋଟ ନାଲି ଆଲୁଅଟା ଜଳି ଉଠିଲା । ସଙ୍ଗେ ସଙ୍ଗେ ହୋଷ୍ଟେସ୍ ଉଠି ଆସି ମୋ ପାଖକୁ ଝୁଙ୍କି ପଡ଼ିଲେ......"ଆପଣଙ୍କ ପାଇଁ ମୁଁ କଣ କରିପାରେ ?"

ସେଇ ଗନ୍ଧ, ସେଇ କଣ୍ଠସ୍ୱର..... । ନେଳିଆ ଅସ୍ପଷ୍ଟ ଆଲୋକରେ ମୁଁ ତାଙ୍କ ଆଡ଼େ ଚାହିଁଲି । ସେଇ କମନୀୟ ମୁଖଶ୍ରୀ, ସେଇ ନାକ, ସେଇ ଓଷ୍ଠାଧର, ସେମ୍ଫ୍ରକରା ସେଇ ଝୁଙ୍କୁ ଝୁଙ୍କୁ ବାଳ କାନ୍ଧ ଉପରେ ଭାଙ୍ଗି ପଡ଼ିଛି.... । ସେଭେନ୍‌ଥ ହେଭନ୍‌ର ସେଇ ହାଲୁକା, ମଧୁର ଗନ୍ଧ......ଦେହର ସୌରଭ ସହିତ ମିଶିଯାଇ ଏକାକାର ହୋଇ-ଯାଇଛି । କ୍ଷଣକପାଇଁ ଦୃଷ୍ଟି ବିନିମୟ ହେଲା । ସେ ଆଖିରେ ଓ ଓଠରେ କ୍ଷଣକପାଇଁ ଏକ ପରିଚୟ ଫୁଟିଉଠିଲା । ସେଇ ମୁହୂର୍ତ୍ତରେ ମୁଁ ଜାଣି-ପାରିଲି, ଏଇ 'ସେଭନ୍‌ଥ ହେଭନ୍'ର ମାଧ୍ୟମରେ ଦୁଇଟି ପ୍ରାଣର ସଂଯୋଗ ବହୁଦିନରୁ ଘଟିଯାଇଛି । ମୋ ପେକେଟର ଦ୍ୱିତୀୟ ଶିଶିଟି ଆକସ୍ମିକ ଭୁଲ ନୁହେଁ । ଦୁଇଟି ପ୍ରାଣକୁ ସଂଯୋଗ କରି ଏକ ଅଦ୍ଭୁତ ସେତୁ ଗଢ଼ିଉଠିଛି ।

ମୁହୂର୍ତ୍ତଟା କଟିଗଲା । ଆମ୍ନସ୍ଥ ହେଲି । ଜଣେ ସାଧାରଣ ଯାତ୍ରୀ ଯେଉଁ ଭାଷାରେ ଏୟାର ହୋଷ୍ଟେସ୍‌କୁ କହିବାର କଥା, ସେଇ ଭାଷାରେ କଣ୍ଠରେ ସୌଜନ୍ୟ ଫୁଟାଇ କହିଲି, "ଟିକିଏ କଫି ପାଇପାରେ କି ?"

"ନିଶ୍ଚୟ ।"

ଏୟାର୍ ହୋଷ୍ଟେସ୍ ଅନ୍ତର୍ହିତ ହେଲେ ।

# ଉଦ୍ଧବ କେତେ ତୁ ପଚାରୁ

(ଏକ)

ନଈଟା ଯେଉଁଠି ବାଙ୍କ ମୋଡ଼ି ଚନ୍ଦ୍ରାକାରରେ ଘୁରିଯାଇଛି ସେଇ ବାଙ୍କ ଉପରେ ବନ୍ଧ ବାଡ଼କୁ ଲାଗି ରଜାବାହାଦୁରଙ୍କର ତିନିମାହାଲା କୋଠା । ତିନିପୁରୁଷି ପୁରୁଣା ଘର ହେଲେ ବି ରକ୍ଷଣାବେକ୍ଷଣରେ ଖୁବ୍ ଯତ୍ନ ନିଆଯାଉଛି । ଘରଟା ସବୁଦିନେ ଯେମିତି ନୂଆ । ତାର କାରଣ, ରଜାବାହାଦୁର ଓ ତାଙ୍କ ପୂର୍ବରୁ ତାଙ୍କର ପିତା ଉଚ୍ଚଶିକ୍ଷିତ, ଆଧୁନିକ ରୁଚିସମ୍ପନ୍ନ; ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବ ସବୁଦିଗରେ ସ୍ପଷ୍ଟ । ରଜାବାହାଦୁର ତାଙ୍କର ଗ୍ରଲିଚଳଣ, ରୀତିନିତି ସବୁ ପାଶ୍ଚାତ୍ୟ ଢଙ୍ଗରେ ଗଢି ନେଇଛନ୍ତି । ଶୃଙ୍ଖଳାରେ ସାମାନ୍ୟ ତ୍ରୁଟି ସେ ବରଦାସ୍ତ କରିପାରନ୍ତି ନାହିଁ । ସେ କଥା ତାଙ୍କର ସେକ୍ରେଟାରୀ, ଦେହରକ୍ଷୀ ଅଫିସରଙ୍କଠାରୁ ମେହେନ୍ତର ମାଳୀ ପର୍ଯ୍ୟନ୍ତ ସମସ୍ତେ ଭଲରୂପେ ଜାଣନ୍ତି । ସମସ୍ତେ ସେଥିପ୍ରତି ସତର୍କ ଓ ଜାଗ୍ରତ ।

ସେଦିନ ଫାଲ୍‌ଗୁନ ମାସର ସକାଳ । ବ୍ରେକ୍‌ଫାଷ୍ଟର ସମୟ ଆସନ୍ନ । ଆଉ ଘଡ଼ିକ ମଧ୍ୟରେ ପାଉଚ୍ଛ ଉପରେ ଗଜାବାହାଦୁରଙ୍କ ଜୋତାର ମସ୍ ମସ୍ ଆଓ୍ୱାଜ ବାଜି ଉଠିବ । ସେପଟୁ ସେକ୍ରେଟାରୀ, ପାଖଘରୁ ଦେହରକ୍ଷୀ ମିଲିଟାରୀ ଅଫିସର ସସମ୍ଭ୍ରମରେ ରାଜାବାହାଦୁରଙ୍କର କରମର୍ଦ୍ଦନ କରି ବ୍ରେକ୍‌ଫାଷ୍ଟ ଟେବୁଲରେ ନିର୍ଦ୍ଦିଷ୍ଟ ସ୍ଥାନ ଅଧିକାର କରି ବସିବେ । ପାକଶାଳାରେ ବବୁର୍ଚ୍ଚି ଖାନସମା ବ୍ୟସ୍ତ ହୋଇପଡ଼ିଛନ୍ତି । ମୁଣ୍ଡରେ ପଗଡ଼ି ଠିକ କରିନେଇ ଓ ସେଇ ପଗଡ଼ି ମଝିରେ ଚକ୍ ଚକ୍ ପିତଳ ଅକ୍ଷର 'P' ଟା ଆଣ୍ଠିନେଇ ଇବ୍ରାହିମ୍ ଟେବୁଲ ସଜାଡ଼ିବାରେ ଲଗିଛି । (ଗଜାବାହାଦୁରଙ୍କର ପୈତୃକ ନାମ 'ପ' ଘଟିତ) ।

ଆଠଟା ବାଜିବାକୁ ଆଉ ମୋଟେ ୫ ମିନିଟ ବାକୀ ।

ତେତାଲ୍ଲ ଘରର ଡ୍ରେସିଂରୁମ୍‌ରେ ଗଜାବାହାଦୂର ପ୍ରସାଧନରତ ବୟସ ଷାଠିଏ ପାଖାପାଖି ହେଲେ ବି ଶରୀରରେ କେଉଁଠି ହେଲେ ସାମାନ୍ୟ ଶିଥିଳତାର ଚିହ୍ନ ନାହିଁ । ଉଜ୍ଜ୍ୱଳ ସ୍ୱାସ୍ଥ୍ୟ । ପ୍ରଫୁଲ୍ଲ ମୁଖଶ୍ରୀ । ଗୁଣ ଗୁଣ୍ କରି ଏକ ପାଶ୍ଚାତ୍ୟ ସୁର୍ ଭଙ୍ଗୁ ଭଙ୍ଗୁ ଦକ୍ଷ ଆଙ୍ଗୁଳିରେ ଗଳା କଲରର ତଳେ ଟା'ଇଟା ଘୁଉଇନେଇ 'ନଟ୍' ପକାଉଛନ୍ତି । ଖୋଲା ଝରକାବାଟେ ଦୃଷ୍ଟି ଘୁରିବୁଲୁଛି ନଈ ଓ ଆକାଶ ଉପରେ ।

ଶୀତ ଛାଡ଼ି ଛାଡ଼ି ଆସୁଛି । ସକାଳର ସୂର୍ଯ୍ୟକିରଣ ସରୁଧାର ପାଣି ଉପରେ, ଦୂରକୁ ଦୂରକୁ ଲମ୍ବି ଯାଇଥିବା ବାଲିର ଢେଉ ଉପରେ ନାନା ବର୍ଣ୍ଣରେ ଝଟକି ଉଠୁଛି । ଆକାଶ ନିର୍ମଳ ନୀଳ । ସୂର୍ଯ୍ୟକୁ ମୁହାଁକରି ଉଡ଼ିଯାଉଛନ୍ତି ସକାଳର ଦୂରଗାମୀ ପକ୍ଷୀବାହିନୀ । ସଦ୍ୟସ୍ନାତ, ସୁରଭିତ ଗଜାବାହାଦୁରଙ୍କ ଦେହ ଛୁଇଁ ଛୁଇଁ ଯାଉଛି ନଦୀବକ୍ଷରୁ ଭସିଆସୁଥିବା ମୃଦୁ ସମୀରଣ । ତନୁ ମନ ଉଲ୍ଲସିତ ହେଉଛି । ଗଜାବାହାଦୁର ଝରକା ପାଖକୁ ଲଗିଆସିଲେ ।

ବନ୍ଧତଳେ ଯେଉଁ ପାଣିଧାର କଳ କଳ ହୋଇ ବହିଯାଉଛି, ଅଗଭୀର ସେଇ ସୋତଧାରରେ ସ୍ନାନରତା ଏକ ଅପରୂପ ଲାବଣ୍ୟମୟୀ

ତରୁଣୀ । ତରୁଣୀର ପରିଧେୟ ଏକ ରକ୍ତବର୍ଣ୍ଣ ଶାଢ଼ୀ । ପାଣିରୁ ଉଠିପଡ଼ି ସେ କୂଳଆଡ଼କୁ ଯିବାକୁ ଉଦ୍ୟତ ହେଉଛି । ବକ୍ଷରୁ ବାସ ଖସିପଡ଼ିଛି । ସାରା ଅଙ୍ଗରୁ ପାଣି ନିଗାଡ଼ି ହୋଇପଡ଼ୁଛି । ସକାଳର ତରୁଣ ସୂର୍ଯ୍ୟ ଲୋଲୁପ ଆଙ୍ଗୁଳିରେ ତରୁଣୀର ଉନ୍ମୁକ୍ତ ଦେହ ସ୍ପର୍ଶ କରିବାକୁ ବାତୁଳପରି ଛୁଟି ଆସୁଛି ଯେପରି । ରଜାବାହାଦୁର ଝରକା ଉପରୁ ଝୁଙ୍କିପଡ଼ିଲେ....

× × ×

ତଳ ତାଲାର ଏକ ନିଭୃତ କକ୍ଷରେ ସେକ୍ରେଟାରୀ ଏକାଗ୍ରଚିତ୍ତରେ କାମ କରି ଚାଲିଛନ୍ତି । ରେକ୍ ଉପରେ ଫାଇଲ୍ ଗଦା ହୋଇ ରହିଛି । କଲମ କ୍ଷିପ୍ରଗତିରେ ଚାଲିଛି । ମଝିରେ ମଝିରେ ହତାଶ ଦୃଷ୍ଟିରେ ଫାଇଲ ଗଦା ଆଡ଼େ ଚାହିଁ ଦୀର୍ଘନିଶ୍ୱାସ ଛାଡ଼ୁଛନ୍ତି ଓ ପୁଣି ଆଖି ଫେରାଇନେଇ ଆଗରେ ଖୋଲା ହୋଇଥିବା କାଗଜପତ୍ରରେ ମନୋନିବେଶ କରୁଛନ୍ତି । ବହୁକୁଟୁମ୍ବୀ ଲୋକ । ଅନେକ ପ୍ରାଣୀଙ୍କର ଦାୟିତ୍ୱ ତାଙ୍କ ମୁଣ୍ଡ ଉପରେ । ନ ହେଲେ ରିଟାୟାର କରିସାରିଲା ପରେ ପୁଣି ଏତେ ଯୋଗାଡ଼ଯନ୍ତ୍ର କରି ଏଇ ଚାକିରୀରେ ପଶିବାକୁ ସେ ମନ ବଳାଇ ନ ଥାନ୍ତେ ।

ବ୍ରେକ୍‌ଫାଷ୍ଟର ସମୟ ଉତ୍ତୀର୍ଣ୍ଣ ପ୍ରାୟ । ଏ ଘରର ନିୟମାନୁଯାୟୀ ଟେବୁଲରେ ରଜାସାହେବଙ୍କ ସଙ୍ଗେ ଚା ଖାଇବାକୁ ହେବ । ତା'ପରେ ଡାକରା ପଡ଼ିବ ସାହେବଙ୍କ ଅଫିସ ଘରେ । କେତେଟା ଅତ୍ୟନ୍ତ ଜରୁରୀ ଫାଇଲ ରହିଯାଇଛି । ଏଇବେଳା କରାଇ ନ ନେଲେ ରକ୍ଷା ନାହିଁ । ବିଷର୍ଣ୍ଣ ଚିତ୍ତରେ ସେକ୍ରେଟାରୀ ମହାଶୟ ବାଁପଟ ରେକ୍ ଉପରୁ ଫାଇଲ ଗଦାଟା ଆଣିବାକୁ ଉଠିପଡ଼ିଲେ । ଠିକ୍ ସେଇ ମୁହୂର୍ତ୍ତରେ ହାଇପାଓ୍ୱାର ଲେନ୍‌ସ୍ ତଳୁ ତାଙ୍କର ଦୃଷ୍ଟି ଖୋଲା ଝରକାବାଟେ ନିର୍ଜନ ନଈକୂଳର ସେଇ ସ୍ନାନରତା ତରୁଣୀ ଉପରେ କ୍ଷଣକପାଇଁ ନିବଦ୍ଧ ହୋଇଗଲା । ତରୁଣୀର ଆର୍ଦ୍ର, ଉନ୍ମୁକ୍ତ, ଶୁଭ୍ର ଦେହାବୟବ ଉପରେ ଶତ ଇନ୍ଦ୍ରଧନୁ ଭାଙ୍ଗିପଡ଼ୁଛି ଯେପରି । ଫାଇଲ ବିଡ଼ା ଉପରେ ସେକ୍ରେଟାରୀଙ୍କର ହାତ କ୍ଷଣକ ପାଇଁ ଅଟକିଗଲା ।

× × ×

ପୂରା ଛ’ ଫୁଟ ଲମ୍ବା ଦେହରକ୍ଷୀ ମିଲିଟାରୀ ଅଫିସର ନିଜ କକ୍ଷରେ ପ୍ରସ୍ତୁତ ହେଉଥିଲେ ବ୍ରେକ୍‌ଫାଷ୍ଟ ଟେବୁଲକୁ ଯିବା ପାଇଁ । ପିନ୍ଧିଛନ୍ତି ଖାକୀ ଟ୍ରାଉଜର, ଖାକୀ ବୁସ ସାର୍ଟ....କେତେଟା ପିତଳ ଅକ୍ଷର ଉପରେ ବ୍ରେସୋ ଘଷି ସଫା କରୁଥିଲେ—ଯେମିତି କି କଡ଼ା ଇସ୍ତ୍ରୀକରା ଖାକୀ ସାର୍ଟର କାନ୍ଧ ଉପରେ ଅକ୍ଷରଗୁଡ଼ିକ ଝକ୍ ଝକ୍ କରିଉଠିବ । ଉପର ଦାନ୍ତ ତଳ ଓଠ ଉପରେ ଗୁପି ଧରି ସେ ବ୍ରସ୍ ଚଳାଉଥିଲେ । ଡାହାଣପଟ ଖୋଲା ଝରକାବାଟେ ଅକସ୍ମାତ୍ ଦୃଷ୍ଟି ପଡ଼ିଗଲା ସେଇ ନିଗେଳା ଗାଧୁଆ ଘାଟ ଉପରେ ।

ଅସ୍ପଷ୍ଟ ସ୍ୱରରେ ‘ମାଇଁ ଗଡ୍’ ଉଚ୍ଚାରଣ କରି ସେ ଏକ ଲମ୍ଫରେ ଆଲମାରୀ ପାଖକୁ କୁଦିଯାଇ ତା ଭିତରୁ ବାହାର କଲେ ବାଇନୋକୁଲାର ।...........

× × ×

ଅମ୍‌ଲେଟ୍‌ଟା ଉତାରିନେଇ ସେଇ ଚୁଲାରେ ଗୁ କେଟ୍‌ଲି ଚଢ଼ାଇ-ଦେଇ କାନ୍ଥ ଘଡ଼ି ଆଡ଼େ ଅନାଇ କପାଳରୁ ଝାଳ ପୋଛିହେଲା ଅବଦୁଲ । ଏପର୍ଯ୍ୟନ୍ତ ବ୍ରେଡ୍ କଟାଯାଇନାହିଁ । “ଆରେ ଇବ୍ରାହିମ୍ ମିଆଁ, ଟେବଲ୍‌ମେ ପ୍ଲେଟ୍ ଲଗାକେ ଜଲ୍‌ଦି ଆଓ !” ‘ଆୟା’ ବୋଲି ସେପଟୁ ଜବାବ ଦେଇ ଇବ୍ରାହିମ୍ ଆସୁ ଆସୁ ପ୍ରାୟ ଚିତ୍କାର କରି ଅଟକିଗଲା । ତା ପରେ ଅବଦୁଲକୁ ଅଙ୍ଗୁଳି ଦେଖାଇ ଝରକାବାଟେ ଯେଉଁ ଦୃଶ୍ୟ ସେ ଦେଖାଇଲା ସେଥିରେ ପ୍ରଥମେ କିଛି ନ ବୁଝି ଚିଡ଼ିଉଠି, ପରେ ଗ୍ରାହ୍ୟ ନ କଲା ପରି ସାମାନ୍ୟ ମୁଣ୍ଡ ଟେକି ନଈଆଡ଼େ ଗ୍ରହିଁ ଶେଷରେ ଗୋଲ ଗୋଲ ଆଖି କରି ଅବଦୁଲ୍ ନିର୍ବାକ ନିଶ୍ଚଳ ହୋଇଗଲା । ଅବଦଲ ଓ ଇବ୍ରାହିମ କାନ୍ଧ ଲଗାଲଗି ହୋଇ ଏକ ଝରକା ପଛଆଡ଼ୁ ଏକଦୃଷ୍ଟିରେ ଗ୍ରହିଁ ରହିଲେ.......ଉଭୟେ ଉଭୟକୁ ସୁପାରିଶ କଲେ “ଓ୍ୱାଃ” “ଓ୍ୱାଃ” ! ଅଧାକଟା ହୋଇ ବ୍ରେଡ ପଡ଼ିରହିଲା......ଗୁ କେଟ୍‌ଲିରୁ ପାଣି ଉତୁରିପଡ଼ିଲା ।

× × ×

ନଦୀପଟ ଚଉଡ଼ା ବାରନ୍ଦାରେ ଝାଡ଼ୁ ଦେଇ ଗ୍ଲିଛି ଭଜନା ମେହେନ୍ତର । କଳା କୁଚ୍ କୁଚ୍ ଗଜରା ଟୋକା । ବଳିଲ ବଳିଲ ଦେହ । ଚଉଡ଼ା ଛାତି । ବଳିଷ୍ଠ ମାଂସପେଶୀ । ରାଜାବାହାଦୁର ଗ୍ହା ଖାଇ-ସାରିଲ ପରେ ଚୁରୁଟ୍ ଧରି କିଛି ସମୟ ଏଇ ବାରନ୍ଦାରେ ପଦଗ୍ରଣ କରନ୍ତି । ଭଜନାର ଆଜି ଟିକେ ଡେରି ହୋଇଯାଇଛି । ତରତର ହୋଇ ଝାଡ଼ୁ ଚଳାଇ ଦୌଡ଼ିଛି ଭଜନା । ହଠାତ୍ ଦୃଷ୍ଟି ପଡ଼ିଗଲ ନଈତୁଠ ଆଡ଼େ ।

ତା ଆଖି ଝଲସିଗଲ । ଦି ହାତ ପାପୁଲିରେ ଆଖି ମଳି ପୁଣି ସେ ଗ୍ହିଁଲ । ଝାଡ଼ୁ ହାତରୁ ଖସିପଡ଼ିଲ । ପାଟି ଆଁ । ବାରନ୍ଦାରୁ ଦି ଗ୍ରି ପାହାଚ ଅଜାଣତରେ ଓହ୍ଲାଇଗଲ ଭଜନା ମେହେନ୍ତର ।

× × ×

ବାରନ୍ଦାର ସେପଟୁ ଆସଥିଲ ହେଡ୍ ଜମାଦାର କାମ ତଦାରଖ କରି । ଭଜନା ଉପରେ ଦୃଷ୍ଟି ପଡ଼ିବାରୁ ସେ ପାଟି କରି ଉଠିଲ, "ଆବେ .....ଏୟ୍....ସେଠି ଠିଆ ହେଇଥା'....ଶ.... । ଗ୍କିରୀ ଗନ୍ଧେଇଲଣି କି ବେ....ଆ...ବେ" । ଶେଷଆଡ଼କୁ ହେଡ ଜମାଦାରର ପାଟି ଖନି ବାଜି-ଗଲ । ଭଜନା ପାଖକୁ ଲଗି ଆସୁ ଆସୁ ଡେଙ୍ଗା ଜମାଦାରର ଟେରା ଆଖିରେ ପଡା ପଡ଼ିବାରେ ଭୁଲ ହୋଇଗଲ ପରା......

× × ×

ଅସତର୍କ ଏକ ଆଶ୍ଚର୍ଯ୍ୟ ମୁହୂର୍ତ୍ତ । ନିର୍ଦ୍ଦିଷ୍ଟ କକ୍ଷପଥରେ ଗତି କରୁ କରୁ ଛିଟିକିପଡ଼ିଲେ ରାଜାବାହାଦୁରଙ୍କଠାରୁ ଭଜନା ମେହେନ୍ତର । ସମସ୍ତେ ସମାନ....ଏକାକାର; ଟିକିଏ ହେଲେ ବି ପ୍ରଭେଦ ନାହିଁ କେଉଁଠି । ମୁହୂର୍ତ୍ତଟି କଟିଗଲ । ଦୈନନ୍ଦିନ କାର୍ଯ୍ୟକ୍ରମ ପୁଣି ଗଡ଼ିଗ୍ଲିଲ ସବୁଦିନ ପରି ।

( ଦୁଇ )

ସ୍ୱର୍ଗପୁରୀ । ସମୟ ସେଇ ଫାଲ୍‌ଗୁନର ସକାଳ—ଆଠଟା ବାଜିବାକୁ ପାଞ୍ଚ ମିନିଟ୍ । ଅର୍ଦ୍ଧଶାୟିତ ଅବସ୍ଥାରେ ଭଗବାନ ଶ୍ରୀକୃଷ୍ଣ ଗୋଟିଏ ନୂଆ ବାଉଁଶ ବଇଁଶୀରେ ରନ୍ଧ୍ର କରୁଛନ୍ତି ଏକମନରେ । ଓଠରେ ଲଗି ରହିଛି ଭୁବନମୋହନ ମୃଦୁ ହସ । ପାଦ ନିକଟରେ କରଯୋଡ଼ି ଉଦ୍ଧବ ଦଣ୍ଡାୟମାନ । ବିଗଳିତ କଣ୍ଠରେ ସେ ପଚାରୁଛନ୍ତି, "ଏ କି ପରିହାସ, ପ୍ରଭୁ, ଏ କି ପ୍ରହେଳିକା ? ମନୁଷ୍ୟକୁ ସୃଷ୍ଟିର ସର୍ବଶ୍ରେଷ୍ଠ ପ୍ରତୀକ କରି ଗଢ଼ି ତା ମର୍ମକୋଷରେ କାହିଁକି ଖଞ୍ଜିଦେଲ ଆପଣ ଏ ଦୁର୍ବଳତା....ଏଇ କଠୋର ଅଭିଶାପ...... ?"

" ଅଭିଶାପ ?" ମୁନିବର ଭକ୍ତଶ୍ରେଷ୍ଠ ନାରଦ ପଶି ଆସୁ ଆସୁ ପ୍ରତିବାଦ କଲେ—"ଅଭିଶାପ ନୁହେଁ, ଉଦ୍ଧବ ! ଲୀଳାମୟଙ୍କର ଲୀଳା ଅତି ବିଚିତ୍ର, ରହସ୍ୟମୟ । ମନୁଷ୍ୟକୁ ଏହାହିଁ ତ ପରମପୁରୁଷ ଭଗବାନଙ୍କର ସର୍ବଶ୍ରେଷ୍ଠ ଆଶୀର୍ବାଦ । ବୁଝିବାକୁ ଚେଷ୍ଟାକର.......ଜୀବନସାରା ଖାଲି ପ୍ରଶ୍ନ ହିଁ ପଚାରିଲ, କିଛି ବୁଝିଲ ନାହିଁ ! ଏଇ ଦେଖ, ଯେଉଁ ଦ୍ୱାର ଦେଇ ମୁଁ ପ୍ରବେଶ କଲି, ତାହା ଅର୍ଦ୍ଧୋନ୍ମୁକ୍ତ...ନା..ଅର୍ଦ୍ଧରୁଦ୍ଧ ? ଉଭୟ କଥା ଠିକ୍ । ଠିକ୍ ସେହିପରି ।"

ଭଗବାନ ଶ୍ରୀକୃଷ୍ଣ ମୃଦୁ ମୃଦୁ ହସିବାକୁ ଲଗିଲେ ।

# ଯୋଜନା

ଭୂପତିବାବୁ ଯୋଜନା ବିଶାରଦ ।

ଗତ ପନ୍ଦର ଦିନ ହେଲା ସେ ଲାଗିପଡ଼ିଥିଲେ ଯୋଜନାର ଅଗ୍ରଗତି ସମ୍ବନ୍ଧରେ ଏକ ଦୀର୍ଘ ସୁଚିନ୍ତିତ ସାରଗର୍ଭକ ରିପୋର୍ଟ ଲେଖିବାରେ । ଗତ ବର୍ଷମାନଙ୍କରେ ଯୋଜନା କିଭଳି ଗତି କରିଛି, ଗତିପଥରେ କି ବାଧାବିଘ୍ନ ଦେଖାଦେଇଛି ଓ ସେ ସବୁର ଦୂରୀକରଣର ପ୍ରକୃଷ୍ଟ ପନ୍ଥା କଣ—ସବୁ ଦୃଷ୍ଟିରୁ ସମସ୍ୟାର ପୁଙ୍ଖାନୁପୁଙ୍ଖ ଆଲୋଚନା କରାଯାଇଛି ରିପୋର୍ଟରେ । ସଭାଗୃହରେ ଏ ରିପୋର୍ଟ ଉପସ୍ଥାପିତ ହେବ । ସମଗ୍ର ଦେଶବାସୀଙ୍କର ଯାବତୀୟ ପ୍ରଶ୍ନର ଉତ୍ତର ଦେବ ଏହି ରିପୋର୍ଟ । ଦିନ ନାହିଁ, ରାତି ନାହିଁ, ଭୂପତିବାବୁ ସବୁ ଭୁଲି ଲାଗିଥିଲେ ଏଇ ରିପୋର୍ଟ ପ୍ରସ୍ତୁତ କରିବାରେ । କାଲି ରାତିସୁଦ୍ଧା ରିପୋର୍ଟର ପ୍ରଥମ ଖସଡ଼ା ହୋଇଯାଇଛି ।

ଆଜି ରବିବାର । ସକାଳ ଆଠଟା । ଦାଣ୍ଡବାରନ୍ଦା ଇଜି ଚେୟାରରେ ବସି ଚା’ ପାନ କରୁଛନ୍ତି ଭୂପତିବାବୁ । ହାତରେ ଜ୍ୱଳନ୍ତ ସିଗ୍ରେଟ୍; ମନରେ ସେ ଏକ ପ୍ରକାର ସନ୍ତୋଷ ଅନୁଭବ କରୁଛନ୍ତି । ସକାଳର ରାସ୍ତାଘାଟ, ଆକାଶ, ହାତର ସିଗ୍ରେଟ, ଚା’ ସବୁ ଭଲ ଲାଗୁଛି । ପନ୍ଦର ଦିନ ହେଲା ସେ ଯେପରି କେଉଁଆଡ଼େ ହଜିଯାଇଥିଲେ । ଆଜି ନୂଆକରି ଚାରିଆଡ଼େ ଆଖି ବୁଲାଇ ଦେଖୁଛନ୍ତି । ସବୁ ନୂଆ ପରି ଲାଗୁଛି । ମନଟା ଭାରି ହାଲୁକା ହାଲୁକା ।

ଏଇ ସମୟରେ ଭୂପତିବାବୁଙ୍କ ଗୃହିଣୀ କନକଲତାଙ୍କ ପ୍ରବେଶ । ହାତରେ ଏକ ମୋଟା ହାତୀମାର୍କା ଏକ୍‌ସରସାଇଜ ଖାତା, ଚେକ୍‌ବହି ଓ ଫାଉଣ୍ଟେନ୍ ପେନ୍ । ଭୂପତିବାବୁଙ୍କର ଲଲାଟରେ ବିରକ୍ତିଭାବ ଫୁଟିଉଠିଲା, ଭ୍ରୂ କୁଞ୍ଚିତ ହେଲା । ଏସବୁ ଲକ୍ଷଣ ସହିତ ପରିଚିତ କନକଲତା ବେଶ୍ ଦୃଢ଼ ଓ ସ୍ପଷ୍ଟ କଣ୍ଠରେ କହିଲେ—

“ଆଜି କିନ୍ତୁ ମୁଁ ଛାଡ଼ୁନାହିଁ ! ଦି’ ମାସ ହେଲା ତୁମେ ଖସିରହୁଛ । ଆଜି ତୁମକୁ ହିସାବ ଦେଖିବାକୁ ହେବ ।” କହି କନକଲତା ଚେୟାର ଟାଣିଆଣି ଘନହୋଇ ବସିଲେ ଓ ଉପରୋକ୍ତ ପଦାର୍ଥଗୁଡ଼ିକୁ ଟି’ ପୟ ଉପରେ ରଖିଲେ । ଥରେ ଗୃହିଣୀଙ୍କ ଆଡ଼େ ଚାହିଁ, ସିଗ୍ରେଟରେ ଶେଷ ଟାଣ ଦେଇ ଝାଡ଼ିଝୁଡ଼ି ହୋଇ ଉଠି ବସି ଭୂପତିବାବୁ ଖାତାଟାକୁ ଉଠାଇ-ନେଲେ । ମନେ ମନେ ନିଜର ଭାଗ୍ୟକୁ ନିନ୍ଦିଲେ । କନକଲତାଙ୍କର ବୋଧଶକ୍ତିରହିତ ଜଡ଼ ମନ ପ୍ରତି ମନେ ମନେ ଅନୁକମ୍ପା ବୋଧକଲେ । ଖାତାର ପୃଷ୍ଠାଗୁଡ଼ିକ ମୂଳରୁ ଶେଷ ପର୍ଯ୍ୟନ୍ତ ଓଲଟାଇଗଲେ । ତା’ ପରେ ଖାତାଟାକୁ ଯଥାସ୍ଥାନରେ ରଖିଦେଇ ଗୃହିଣୀଙ୍କ ଉଦ୍ଦେଶ୍ୟରେ କହିଲେ—

“ଏବଷ୍ଟ୍ରେକ୍‌ଟ୍ କାହିଁ ?”

“ଏବଷ୍ଟ୍ରେକ୍‌ଟ୍ ?”

“ହଁ, ଏବ୍‌ଷ୍ଟ୍ରେକ୍‌ଟ୍ । ତୁମେ ଯେଉଁ ମାଦଳା ପାଞ୍ଜି ତିଆରି କରିଛ ସେଥିରେ ତ ଜଗତର ସବୁକଥା ରହିଛି । ପ୍ରତ୍ୟେକ ଆଇଟେମ୍‌କୁ ମୋତେ

ଦେଖିବାକୁ ହେବ ବୋଲି ଯଦି ତୁମର ଉଦ୍ଦେଶ୍ୟ, ତୁମକୁ ଆପାତତଃ ନିରାଶ ହେବାକୁ ହେଉଛି । କାରଣ, ମୋର ତା କରିବାକୁ ସମୟ ନାହିଁ କି ଧୈର୍ଯ୍ୟ ନାହିଁ । ତେଣୁ କହୁଥିଲି, ଏ ସବୁର ଗୋଟାଏ ମୋଟାମୋଟି ହିସାବ ରଖିଥିଲେ ମୋର ଦେଖିବାର ଟିକେ ସୁବିଧା ହୋଇଥାନ୍ତା । ତା' ଯେତେବେଳେ କରିନାହଁ, ଏବେ ବି କରିନିଅ । ପରେ ଦେଖିନେବି ।"

କନକଲତା ଅସହିଷ୍ଣୁ କଣ୍ଠରେ ଚିତ୍କାର କରିଉଠିଲେ, "ପରେ ନୁହେଁ, ବର୍ତ୍ତମାନ । ମୋଟାମୋଟି ହିସାବ ମୋ ମୁହଁରେ ଅଛି । ତୁମେ ଲେଖ, ମୁଁ କହିଯାଉଛି ।"

ଭୂପତିବାବୁ ଆଉ ଗୋଟାଏ ସିଗ୍ରେଟ ଧରାଇଲେ ।

କନକଲତା—ଏଇ ଦେଖ, ପ୍ରଥମ ପାଞ୍ଚପୃଷ୍ଠା ଚାଉଳ, ଡାଲି, ବିରି, ଗୋଲଦାନା, ଚିନି, ଗୁ, ମିଶ୍ରି, ଘିଅ, ତେଲ, ମସଲା ଓଗେର ଓଗେର ମୋଟ ୮୦୪ ଟଙ୍କା.....

ଭୂପତିବାବୁ—୮୦୪ ଟଙ୍କା ! ଏତେ କେମିତି ହେଲା ? ଓହୋ, ତମେ ବ୍ୟସ୍ତ ହେଉଛ କାହିଁକି ? ମୁ ଯାହା କହୁଛି, ଟିକିଏ ଶୁଣ । ଏଟା ୮୦୪ ଟଙ୍କା ନ ହୋଇ ୯୩୦ ଟଙ୍କା ତ ହୋଇପାରେ । ଯାହା ହେବ ତା'ର ତ ଗୋଟାଏ ବେସିସ, ମାନେ, ମୂଳକାରଣ ଥିବ । ମୋର କହିବାର କଥା, ଏସବୁ ଗ୍ରସାରି ଓ ଅନ୍ୟାନ୍ୟ ବାବତରେ ଆମ ସଂସାରର ସାଇଜ ବା ଆକାର ଦୃଷ୍ଟେ ସାଧାରଣତଃ କେତେ ଟଙ୍କାର ଖର୍ଚ୍ଚ ବ୍ୟବସ୍ଥା ହେବାର କଥା ତା'ର ତ ଗୋଟାଏ ସିଲିଂ ଆଗରୁ ଧାର୍ଯ୍ୟ ହୋଇଥିବ ଓ ସେଇ ସିଲିଂ ସହିତ ଏକ୍‌ଚୁଏଲ୍ ଖର୍ଚ୍ଚର ଗୋଟାଏ ବିଧିବଦ୍ଧ ସମ୍ବନ୍ଧ ଥିବା ଦରକାର । ହିସାବ ରଖିବାର ଓ ଦେଖିବାର ତ ଗୋଟାଏ ନିର୍ଦ୍ଦିଷ୍ଟ ନିୟମାବଳୀ ରହିଛି । ଆମେ ତ ପୁଣି କୋଟି କୋଟି ଟଙ୍କାର ହିସାବ ରଖୁଛୁଁ !

କନକଲତା—କୋଟି ଫୋଟି ଛାଡ଼ । ତୁମର ତ ହିସାବ ହୁଏ ମେସିନରେ । ହାତ ଲଗେ ନାହିଁ କି ମୁଣ୍ଡ ଲଗେ ନାହିଁ । କହିବ ଟି, ମୋର ଏଠି କଣ କଣ କରିବାର କଥା, ଅଥଚ ମୁଁ କରିନାହିଁ ? କଥା ଗୋଳାଅ ନାହିଁ, ପରିଷ୍କାର କରି କୁହ ।

ଭୂପତିବାବୁ—ପ୍ରଥମେ ତୁମର ଉଚିତ ଥିଲା, ମୋଟ ଖର୍ଚ୍ଚ ତାଲିକାକୁ ଗ୍ରୁପ୍‌ଓ୍ୟାରି ଭାଗ କରିଦେବା । ବୁଝିପାରିଲ ନାହିଁ ? ଆଛା, ଆହୁରି ସରଳ କରିଦେଉଛି । ଏଇ ଦେଖ—ଚାଉଳ, ଡାଲି, ବିରି, ଗୋଲୁଦାନା ପ୍ରଭୃତି ଗୋଟାଏ ଗ୍ରୁପ୍; ଘିଅ, ସୋରିଷତେଲ, ବାଦାମତେଲ, କିରସିନୀ ତେଲ, ମୁଣ୍ଡଲଗାଇବା ତେଲ—ଏ ଆଉ ଗୋଟେ ଗ୍ରୁପ୍ । ଏମିତି ଏକଜାତୀୟ ଜିନିଷ-ଗୁଡ଼ିକୁ ଭିନ୍ନ ଭିନ୍ନ ଗ୍ରୁପରେ ସଜାଇନେବାକୁ ହେବ । ଯେଉଁ ଆଇଟେମ୍-ଗୁଡ଼ା କାହା ସାଙ୍ଗରେ କେହି ମିଶୁନାହାନ୍ତି ସେ ସବୁକୁ ରଖ 'ମିସିଲେନସ' ଗ୍ରୁପ୍‌ରେ । ହେଲ ତ ! ବାସ୍, ଗତ ଛଅ ମାସର ଖର୍ଚ୍ଚ ଏହିଭଳି ଗ୍ରୁପ୍‌ଓ୍ୟାରି ବାଣ୍ଟିଦିଅ । ତା'ପରେ ପ୍ରତ୍ୟେକଟି ଗ୍ରୁପ୍‌ରେ ମାସକୁ ମାସ କିଭଳି ଖର୍ଚ୍ଚ ହେଉଛି ତାକୁ ଯାଞ୍ଚ କରିବାକୁ ହେବ—ଦେଖିବାକୁ ହେବ, ଖର୍ଚ୍ଚର 'ଟ୍ରେଣ୍ଡ୍' ମାନେ, ମାନେ ତୁମେ ନିଶ୍ଚୟ ବୁଝିପାରୁଛ । ଯଦି କୌଣସି ଗ୍ରୁପ୍‌ରେ ଖର୍ଚ୍ଚ ଗୋଟାଏ ମାସରୁ ଆର ମାସକୁ ବଢ଼ିଗଲା ତା'ହେଲେ ତା'ର କାରଣ ଅନୁସନ୍ଧାନ କରିବାକୁ ହେବ—ତାକୁ ରୋକିବାକୁ ହେବ । ଯଦି କୌଣସି ବିଶେଷ କାରଣରୁ ତା' ସମ୍ଭବ ନ ହେଲା ତା'ହେଲେ ଅନ୍ୟ କୌଣସି ଗ୍ରୁପ୍‌ରେ, ଯେଉଁଠି କିଛି ପରିମାଣରେ ବ୍ୟୟ ସଂକୋଚ ସମ୍ଭବ ସେଇଭଳି 'ସେଭିଂ' 'ଲୋକେଟ୍' କରି ଗ୍ରୁପ୍‌ମାନଙ୍କ ମଧ୍ୟରେ 'ଏଡ୍‌ଜଷ୍ଟମେଣ୍ଟ' କରି-ନେବାକୁ ହେବ । ଏହି ହେଉଛି ବାଟ । ଏମିତି କଲେ ହିସାବ ଆପଣା ଛାଏଁ ବାଟରେ ପଡ଼ିଯିବ । ମୋତେ ଦେଉଳିଆ କରିଦେବାର ଯେଉଁ ବ୍ୟବସ୍ଥା ହେଉଛି ସେଥିରୁ ବି ରକ୍ଷା ମିଳିବ ।

ଭୂପତିବାବୁଙ୍କର କଣ୍ଠରେ ଉତ୍ତାପ । ଗୃହିଣୀଙ୍କର ଓଠତଳେ ମୃଦୁ ବିଦ୍ରୂପର ସଂକେତ । କହିଲେ, "ବୁଝିପାରିଲି" । ହାତ ବଢ଼ାଇ ଆଉ ପୃଷ୍ଠାଏ ଓଲଟାଇଦେଇ କହିଲେ—

"ଏଟା ହେଲା ପେଟ୍ରୋଲ ହିସାବ । ମୁଁ ମାଇପି ଲୋକ, ଏସବୁ କଣ ବୁଝିବି ! ତୁମେ ତ ଏ ଖର୍ଚ୍ଚର ହିସାବ ଜାଣ । ଗତ ମାସର ବିଲ୍ ହୋଇଛି ୧୦୫ ଟଙ୍କା । ଆଗ ମାସ, ତା' ଆଗ ମାସ, ତା' ଆଗ ମାସର

ସବୁ ହିସାବ ଅଛି । ଟିକେ ଧର, ମୁଁ ନେଇଆସୁଛି ।” ଗୃହିଣୀ କ୍ଷିପ୍ର-ପଦରେ ଘର ଭିତରକୁ ଯାଇ ବିଲ୍‌ସବୁ ଧରିଆସିଲେ—

“ଏଇ ଦେଖ, ଆଗ ମାସର ୧୧୫ ଟଙ୍କା, ତା ପୂର୍ବ ମାସର ୧୦୦ ଟଙ୍କା । ତା ଆଗ ମାସ ୧୧୦ ଟଙ୍କା । ଏ ବାବଦ ଟିକେ ବୁଝାଇଦିଅନ୍ତ ହେଲେ, ସେହିପରି ଭବରେ ମୁଁ ମୋ ହିସାବତକ ସଜାଡ଼ି ନିଅନ୍ତି ।”

ଭୂପତିବାବୁ ସିଗ୍ରେଟ୍ ଧରଇ ଚିନ୍ତାମଗ୍ନ ହେଲେ । କିଛି ସମୟ ଅଟକିଯାଇ ଗମ୍ଭୀର ଗଳାରେ କହିଲେ—

“ଏଥିରେ ବୁଝିବାର କଣ ରହିଲା ?”

ଗୃହିଣୀ—ଏଁ, ବୁଝିବାର ନାହିଁ ? ମାଇପି ବୁଦ୍ଧିରେ ଯାହା ବୁଝିଛି ଟିକେ ଶୁଣ । ମଟର ଗାଡ଼ିରେ ତ ଅଫିସ ଯିବା ଆସିବା ଦିନକୁ ଦି' ମାଇଲ । କ୍ଲବ, ବନ୍ଧୁବାନ୍ଧବ....କେତେବେଳେ କେମିତି ମୁଁ ସାଙ୍ଗରେ ଯାଏଁ.....ମୋଟ ୫ ମାଇଲ ଧର । ମାସକୁ ହେଲା ୧୦୦ ମାଇଲ । ଅଧିକରୁ ଅଧିକ ହେଲେ ୧୫ ଲିଟର ପେଟ୍ରୋଲ ଲଗନ୍ତା । କିନ୍ତୁ ବିଲ୍ ହେଉଛି ତିନିଗୁଣ, ଗ୍ୱରିଗୁଣ......

କଥା ନ ସରୁଣୁ ଭୂପତିବାବୁ ଅସହିଷ୍ଣୁ ଭବରେ ପାଟିକରି ଉଠିଲେ—“ତୁମେ ଯେମିତି ହିସାବ ବୁଝିବାକୁ ବାହାରିଛ ସେଥିରେ ମୋଟର ଗାଡ଼ି ରଖାଯାଏ ନାହିଁ ।”

ଗୃହିଣୀ—ଆଉ ତୁମେ ଯେମିତି ହିସାବ ମାଗୁଛ ସେଥିରେ ପେଟକୁ ଧୋବାଘରକୁ ଦେବାକୁ ହୁଏ ।

କଥା ଛିଡ଼ିଗଲା । ଭୂପତିବାବୁ ଆଖି ବୁଜି ଢୋକ ଗିଳିଲେ । ଗୃହିଣୀ ଛାଡ଼ିବାର ପାତ୍ର ନୁହଁନ୍ତି—“ରୁହ, ରୁହ, ଆଉ ପୃଷ୍ଠାଟା ଦେଖ । ସିଗ୍ରେଟ,

ଗତ ତିନି ମାସର କାହିଁକି, ପୂରା ବର୍ଷର ମାସ ମାସ ହିସାବ ରଖିଛି । କେଉଁ ମାସ ଷାଠିଏ, କେଉଁ ମାସ ସତୁରି........ବଢ଼ି ବଢ଼ି ଗ୍ଲଲିଛି । ଯା'ର କି ମାନେ, ମହାଶୟ ?"

ଭୂପତିବାବୁ—ସାଙ୍ଗସାଥୀ, ପାର୍ଟି....କିଛି ନାହିଁ ! ତୁମେ କିମିତି ଜାଣିବ, ଗୋଟେ କଡ଼ା ଡ୍ରାଫ୍‌ଟ୍ ଡିକ୍‌ଟେଟ୍ କରୁ କରୁ କେମିତି ଦୁଇ ତିନି ଗ୍ଲରିଟା ସିଗ୍ରେଟ ପୋଡ଼ିଯାଏ, ଖିଆଲ ରହେ ନାହିଁ ! ତୁମେ ଡ୍ରାଫ୍‌ଟ୍ ବୁଝ, ନା ସିଗ୍ରେଟ୍ ? ତୁମକୁ କେମିତି ବୁଝାଇବି ?

ଗୃହିଣୀ—ବୁଝାଇବା ଦରକାର ନାହିଁ । ତେବେ ଏତିକି ଜାଣି ରଖି-ଥାଅ, ଅଫିସରୁ ଯେଉଁ ଅର୍ଡ଼ରଗୁଡ଼ା ଝାଡ଼ିଦିଅ 'ଏତେ ଜଣ ଯାଉଛନ୍ତି, ଲଞ୍ଚ ଖାଇବେ,' ବୈଠକଖାନା ଘରୁ ଯେଉଁ ଫରମାସି ପଠାଅ, 'ଏତେ କପ୍ କଫି, ନୂଆ ସିଗ୍ରେଟ୍ ଟିଣ ପଠାଅ'.....ସେସବୁ ଏଣିକି ବନ୍ଦ ।

ଭୂପତିବାବୁ ଅନ୍ୟମନସ୍କ ଭବରେ ଖାତାର ପୃଷ୍ଠା ଓଲଟାଉ ଓଲଟାଉ ଦୃଷ୍ଟି ପଡିଗଲା ଇଲେକ୍‌ଟ୍ରିକ୍ ବିଲ୍ ଉପରେ । ଉତ୍‌ଫୁଲ୍ଲ ଚିତ୍ତରେ ମନକୁ ମନ କହିଲେ, "ଜୁଲାଇ ମାସର ଇଲେକ୍‌ଟ୍ରିକ୍ ବିଲ୍ ଷାଠିଏ ଟଙ୍କା !"

ଗୃହିଣୀ—ହଁ.....ସେଠୁ କଣ ହେଲା ?

ଭୂପତିବାବୁ—କିଛି ନୁହେଁ । ଜୁଲାଇ ମାସଟା ତୁମର ଆଷାଢ଼ ମାସ, ଏ ଖବରଟା ଜଣାଅଛି ତ?

ଗୃହିଣୀ—ନା, ଆଜ୍ଞା, ଜୁନ୍ ମଝିରୁ ଜୁଲାଇ ମଝି ଆଷାଢ଼........ ତା'ପରେ ଶ୍ରାବଣ ମାସ । କଣ କହିବାକୁ ଗ୍ଲହୁଛ?

ଭୂପତିବାବୁ—ଆଷାଢ଼ ମାସରେ ମନସୁନ୍ ବ୍ରେକ୍ କରେ ।

ଗୃହିଣୀ—କରିବାର କଥା, କିନ୍ତୁ ଏ ବର୍ଷ କଲା ନାହିଁ । ସେ ଖବର ଯୋଜନା ପଣ୍ଡିତଙ୍କୁ ଜଣାଥିବ ବୋଲି ଧାରଣା ଥିଲା ।

ଭୂପତିବାବୁ—ଯୁକ୍ତି ପାଇଁ ତୁମ କଥା ଯଦିବା ସତ ବୋଲି ଧରି ନିଆଯାଏ ତା'ହେଲେ ଶ୍ରାବଣ ୧୫ ଦିନ ତ ଧାର ବର୍ଷା ହୋଇଥିବ । କିନ୍ତୁ ଏ ଘରେ ପଂଖାଗୁଡ଼ାକୁ ବିଶ୍ରାମ ନାହିଁ, ଯା ନାଁ। କଣ?

ଗୃହିଣୀ—ତୁମର ସ୍ମୃତିଲୋପ । ଏ ବର୍ଷ ଆଷାଢ଼ ମାସରେ ଜମା ଦି'ଚାରି ଅସର ବର୍ଷା ହୋଇଥିଲା । ଶ୍ରାବଣ ପ୍ରଥମ ଭାଗରେ ମଧ୍ୟ ସେଇ ଅବସ୍ଥା । ଯାହା ବର୍ଷା ଶ୍ରାବଣ ଶେଷକୁ ଓ ତା'ପର ମାସରେ । ଅଗଷ୍ଟ ସେପ୍‌ଟେମ୍ବର ବିଲ୍ ଦେଖିଲେ ଯାହା ଖୋଜୁଛ ପାଇବ ।

ବାଧା ପଡ଼ିଲା । ଅଫିସ୍‌ର ବଡ଼ବାବୁ ଆସି ପହଞ୍ଚିଲେ । ହାତରେ ଖୋଲା ଫାଇଲ୍ । ଗୃହିଣୀ ଭିତରକୁ ଚାଲିଗଲେ । ଭୂପତିବାବୁ ପଚାରିଲେ, "କଣ, ସରିଗଲା ତ?"

ବଡ଼ବାବୁ ଧୀର କଣ୍ଠରେ କହିଲେ. "ଆଜ୍ଞା, ଟିକିଏ ପଚାରିବାର ଥିଲା । ଏ ବର୍ଷର ପ୍ରଥମାର୍ଦ୍ଧରେ କୃଷିଫାର୍ମରୁ ଯାହା ଆମଦାନୀ ହେବାର କଥା ତା'ର ଅଧାଅଧି ତ ରିପୋର୍ଟରୁ ଦିଶୁନାହିଁ । କି କାରଣ ଦେଖାଇବାକୁ ହେବ ?"

ଭୂପତିବାବୁ ବିରକ୍ତ ହୋଇଉଠିଲେ—"କେତେ ବର୍ଷ ହେଲା ଡିପାର୍ଟ-ମେଣ୍ଟରେ ରହିଲଣି ? କୁହ, ପ୍ରଶ୍ନର ଉତ୍ତର ଦିଅ !"

ବଡ଼ବାବୁ ଅସ୍ପଷ୍ଟ ଗଳାରେ ଜଣାଇଲେ ବର୍ଷର ସଂଖ୍ୟା । ଭୂପତି-ବାବୁ ନ ଶୁଣି କାରଣମାନ ସୂଚାଇ ଦେଇ ଚାଲିଲେ—

"ଅନାବୃଷ୍ଟି, ବିଳମ୍ବରେ ବୃଷ୍ଟି । ତୁମେ କଣ ଜାଣ ନାହିଁ ଏ ବର୍ଷ ବର୍ଷା କେମିତି ଅଦ୍ଭୁତ ଭାବରେ ପଛେଇଯାଇଛି ! ଜୁଲାଇ ଅଗଷ୍ଟରେ ବର୍ଷା ନାହିଁ କହିଲେ ଚଳେ । ସେ କଥା ଯଦି ଡ୍ରାଫ୍‌ଟ୍‌ରେ **ସ୍ପଷ୍ଟ** କରଯାଇ-ନାହିଁ ଏବେ କରିଦେବାକୁ ହେବ । ଯାହା କରିବାର ମୁଁ କରିଦେବି । ଯାଅ, ଯାଅ, ଶୀଘ୍ର ରିପୋର୍ଟଟା ପଠାଇଦିଅ । ଟାଇପ୍ କାମ କେତେ ବାଟ ଗଲା ? ତୁମମାନଙ୍କୁ ନେଇ କାମ ଉଠାଇବା.......ମାଇଁ ଗଡ୍ !'

ବଡ଼ବାବୁ ଗ୍ଲିଗଲେ । କହିଲେ, ଏଇ ଗୋଟାକ ବିଷୟରେ ଟିକିଏ ସନ୍ଦେହ ଉଠିବାରୁ ଦୌଡ଼ି ଆସିଥିଲେ । ଏଇ ଅଧଘଣ୍ଟା ଘଣ୍ଟାଏ ଭିତରେ ଡ୍ରାଫ୍ଟ୍‌ର ନିଟ୍ କପି ପଠାଇଦେବେ ।

ତାଙ୍କ ପଛେ ପଛେ ଆସିଲେ ନରସିଂହବାବୁ । ରବିବାର ସକାଳ ୯ଟା ବେଳେ ତାଙ୍କର ନିୟମିତ ଆଗମନ ହୁଏ; ଗ୍ର' ଖାନ୍ତି, ତିନି ଗ୍ରରିଟା ସିଗ୍ରେଟ, ସମାନସଂଖ୍ୟକ ପାନ ଗ୍ରହଣ କରି ଉଠୁ ଉଠୁ ଦିନ ୧୨ଟା ବାଜେ । ଆଜି କିନ୍ତୁ ସେ ବସିପାରିବେ ନାହିଁ । କଟକ ଯିବାକୁ ହେବ—ବସ୍‌କୁ ଅପେକ୍ଷା ।

ଏଣୁ ତେଣ୍ କଥା ପଡ଼ିଲ । ହଠାତ୍ ନରସିଂହବାବୁ ଗ୍ରରିଆଡ଼କୁ ଆଖି ବୁଲଇ କହିଲେ—

"ଆଚ୍ଛା, ଭୂପତିବାବୁ, ଆଗପଟ ଏ ବଗିଗ୍ଆଡ଼େ ଦୃଷ୍ଟି ଦେଉନାହଁ, କଣ ହୋଇ ପଡ଼ିଛି, ଦେଖିଲ ! ତୁମ ଭଳି ରୁଚିସମ୍ପନ୍ନ ଲୋକର......

ଭୂପତିବାବୁ—କହନ୍ତୁ ନାହିଁ, ଲଜ୍ଜାର କଥା; କିନ୍ତୁ କ'ଣ କରଯାଏ ! ବହୁତ ଚେଷ୍ଟା କଲିଣି, କିଛି ଲଭ ହେଲ ନାହିଁ; ଗୁଡ଼ାଏ ପଇସା ଖର୍ଚ୍ଚ ସାର । ମାଟିଟା ଏମିତି ପଥୁରିଆ ଆଉ ଟାଣ ଯେ ଖଡ଼ାଟାଏ ପୋତିବାର ଉପାୟ ନାହିଁ । ଯଦି ବା ମାଟି ଖୋଳାଇ ନୂଆ ମାଟି ବଦଳାଇ ଦିଆଗଲ, ଗଛ ଗ୍ରରି ଇଞ୍ଚ ନ ଉଠୁଣୁ ପୋକ କାଟି ସାଫ୍ । ସୟଲ ଏନାଲିସିସ୍ ପାଇଁ ସେମ୍ପଲ ପଠାଯାଇଛି । ତା'ର ଫଳାଫଳ ଜଣାପଡ଼ିଲେ ତଦନୁଯାୟୀ ବ୍ୟବସ୍ଥା ହେବ । ସବୁଠୁ ବଡ଼ ଅସୁବିଧା ହେଲ ପାଣିର ଅଭବ । ଗାଧୋଇବାକୁ ତ ପାଣି ନାହିଁ, ଆଉ ବଗିଗ୍ର ! ଆଉ ଗୋଟେ କଥା ଆପଣ ଦୃଷ୍ଟି କରିଛନ୍ତି କି ନାହିଁ —ଏଠି ଯେଉଁ ପାଣି ଅଭବ ତା'ର ମୂଳ କାରଣ ହେଲ ଏଇ ବଗିଗ୍ର । ଏଟା ଗୋଟାଏ ସମସ୍ୟା । ଯେ ପର୍ଯ୍ୟନ୍ତ ପାଣି ଯୋଗାଇବା ବ୍ୟବସ୍ଥା ଯୋଜନାନୁଯାୟୀ ସଂପୂର୍ଣ୍ଣ ନ ହୋଇଛି, ବଗିଗ୍ର କରିବା ବିଲକୁଲ ବନ୍ଦ କରିବା ଦରକାର । ଆପଣ ତ

ଜାଣନ୍ତି, ଦ୍ୱିତୀୟ ରିଜର୍ଭୟର ପାଇଁ ଯେଉଁ ସ୍କିମ୍ ଆସିଥିଲା ତା' ମଞ୍ଜୁର କରାଯାଇ 'ପ୍ଲାନ'ର ଅନ୍ତର୍ଭୁକ୍ତ କରାଯାଇଛି । ସେଥିରେ ପୁଣି ଫରେନ ଏକ୍ସ୍‌ଚେଞ୍ଜ ରହିଛି । ସେ ଆଉ ଏକ ସମସ୍ୟା । ଏଇ ସବୁ କାରଣରୁ କିଛି କରିହେଉନାହିଁ । ମନ ଥିଲେ, ରୁଚି ଥିଲେ କଣ ହେବ ! ତା'ଛଡ଼ା ଏଠି ମୁଣ୍ଡ ପିଟିଦେଲେ କଣ ଗୋଟାଏ ଭଲ ମାଳୀ ପାଇବ ! ନିଜର ବା ସମୟ କାହିଁ ଏ ସବୁ ଦେଖିବାକୁ ?

ବସ୍ ଆସିଗଲା ! ନରସିଂହବାବୁ ବିଦାୟ ନେଲେ । ଗୃହିଣୀ ବାରନ୍ଦାକୁ ବାହାରିଆସି ଡାକିଲେ ହାତ ଠାରି—"ଏ ଆଡ଼େ ଟିକେ ଆସିବ କି ?" ଭୂପତିବାବୁ ତାଙ୍କ ପଛେ ପଛେ ଚାଲିଲେ । ଅଗଣା ପାର ହୋଇ ବାଡ଼ି ଦରଜା ଦେଇ ବାଡ଼ିରେ ଆସି ପହଞ୍ଚିଲେ । ଆଗେ ଆଗେ ଗୃହିଣୀ । ଭୂପତିବାବୁ ଅଟକିଗଲେ । ସେ କେବେ ଏ ଆଡ଼କୁ ଆସି ନ ଥିଲେ । ବେଳ କାହିଁ ? ଚାରିଆଡ଼କୁ ଚାହିଁ ଦେଖିଲେ—ଫଳଫୁଲରେ ସାରା ବାଡ଼ିଟା ଭରି ଉଠିଛି । ପେଣ୍ଠା ପେଣ୍ଠା କଳା ମୁଚ୍ ମୁଚ୍ ବାଇଗଣ, କେଡ଼େ ବଡ଼ ବଡ଼ ନାଲ୍ ଟମାଟୋ, ଘନ ହୋଇ ମାଡ଼ିଛି ଲାଉ, କଖାରୁ, କାକୁଡ଼ି ଲତା, ଉର୍କି ମାରୁଛି କେଉଁଠି ଲାଉ, କେଉଁଠି କାକୁଡ଼ି । ସେପଟେ କ୍ଷେତ ତିଆରି ଚାଲିଛି—ଲାଗିବ ଫୁଲକୋବି, ବନ୍ଧାକୋବି, ଗାଜର । ନାଳୀ ଚାଲିଛି କିଆରିକୁ କିଆରି । ଝିରି ଝିରି ହୋଇ ପାଣି ବୋହି ଚାଲିଛି ଘର ଅଗଣାରୁ, ଗାଧୁଆଘରୁ ।

ଭୂପତିବାବୁ ମୁଗ୍ଧ ଦୃଷ୍ଟିରେ ଦେଖୁଛନ୍ତି । ଗୃହିଣୀ ପାଖକୁ ଲାଗି-ଆସି ସ୍ୱାମୀଙ୍କର ଆଙ୍ଗୁଳିରେ ସାମାନ୍ୟ ଚାପ ଦେଇ ପଚାରିଲେ—"କଣ ଦେଖୁଛ ?"

ଭୂପତିବାବୁ ଚମକିପଡ଼ି ଫେରିଆସିବାକୁ ଗୋଡ଼ ବଢ଼ାଇଲେ । ଗୃହିଣୀ ନିଜର ସରୁ ସରୁ ଆଙ୍ଗୁଳିରେ ଗଣିଲେ ଗୋଟି ଗୋଟି କରି—ପଥୁରିଆ ଟାଣ ମାଟି ଏକ, ଜଳାଭାବ ଦୁଇ, ମାଳୀର ଅଭାବ ତିନି, ସମୟର ଅଭାବ, ମଞ୍ଜିର ଅଭାବ, ଖତର ଅଭାବ.....କୀଟଙ୍କ ଆକ୍ରମଣ...

ଭୂପତିବାବୁ ଦାଣ୍ଡପଟ ବାରନ୍ଦାକୁ ଫେରିଆସି ଆରାମ ଚେୟାରରେ ବସି ସିଗ୍ରେଟ୍ ଧରାଇଲେ । କିଛି ସମୟ କଟିଗଲା । ଗୃହିଣୀ କପେ ଚା' ଆଣି ପାଖ ଟିପୟ ଉପରେ ରଖିଗଲେ । ସାଇଡ୍ ଟେବୁଲ ଉପରେ ସେତେବେଳୁ ଥୁଆ ହୋଇଛି ହିସାବଖାତା, ଚେକ୍ ବହି, ଫାଉଣ୍ଟେନ୍ ପେନ । ନୀରବରେ ସେ ଘର ଭିତରକୁ ଚାଲିଗଲେ ।

ଷ୍ଟେନୋବାବୁ ଆଣି ଦେଇଗଲେ ଟାଇପ୍‌କରା ରିପୋର୍ଟର ତିନି କିତା ନକଲ । ଟେବୁଲ ଉପରେ ପେପରଓ୍ୱେଟ୍‌ର ଚପା ଦେଇ ଭୂପତିବାବୁ ଆଖି ବୁଜି ପଡ଼ିରହିଲେ ।

ସମୟ ଗଡ଼ି ଚାଲିଲା ।

ଦିନ ପ୍ରାୟ ଏଗାରଟା, ଭୂପତିବାବୁ ଗାଧୋଇନାହାନ୍ତି, କିଛି ଖିଆ ହୋଇନାହିଁ । ଗୃହିଣୀ ରୋଷେଇଘରୁ ଉଦ୍‌ବିଗ୍ନ ଚିତ୍ତରେ ବାହାରି-ଆସିଲେ । ଦାଣ୍ଡ ବାରନ୍ଦାରେ ଭୂପତିବାବୁ ନାହାନ୍ତି । ଚେକ୍ ବହି ଉଠାଇ-ନେଇ ଦେଖିଲେ ପୂରା ଟଙ୍କାର ଚେକ୍ କଟା ହୋଇଛି । ହଠାତ୍ ତାଙ୍କ ଦୃଷ୍ଟି ପଡ଼ିଲା ବାରନ୍ଦା କୋଣରେ ଜୁହୁଳି ଜୁହୁଳି ଜଳୁଛି ଏକ କାଗଜ-ବିଡ଼ା ।

ଗାଧୁଆଘରୁ ଶୁଭୁଛି ମୁଣ୍ଡ ଉପରେ ଲୋଟା ଲୋଟା ପାଣି ଢାଳିବାର ଶବ୍ଦ ।

# ଚନ୍ଦ୍ରହାର

ସକାଳେ ଘ୍ ସହିତ ଏକ କଠୋର ସମ୍ବାଦ ପରିବେଷଣ କରଗଲ—କାଲି ରାତିରେ ଘରେ ଚୋରି ହୋଇଯାଇଛି । ଚୋର ଡକାୟତ ଯେ ସିନ୍ଧି କାଟି ଘର ଭଙ୍ଗି ଚୋରି କରିଛନ୍ତି ତା ନୁହେ । ଘରଢେଙ୍କି କୁମ୍ଭୀର । ଗୃହିଣୀ ପ୍ରାୟ ମୋତେ ଉଦ୍ଦେଶ୍ୟ କରି କହି ଗଲିଥିଲେ ଯେ ମୁଁ ଗୋଟାଏ ଭୋଳାନାଥ । ମୁଁ ମୋ ଅଫିସ କାମ୍, ସାଙ୍ଗସାଥୀ, କ୍ଲବ ପ୍ରଭୃତି ଛଡ଼ା କିଛି ତ ଆଉ ଜାଣିଲି ନାହିଁ କି ବୁଝିଲି ନାହିଁ ! ଏଇ ଅପଦାର୍ଥ ଗୁକର ପୁଝାରି ଦଳେ ନେଇ ଏତେ ବଡ଼ ସଂସାରକୁ ଚଳାଇବା ଯେ କି କଷ୍ଟକର ବ୍ୟାପାର ସେ କଥା ସେ ଅଙ୍ଗେ ନିଭାଇଛନ୍ତି, ବା ଯେ ଚନ୍ଦ୍ରସୂର୍ଯ୍ୟ ସୃଷ୍ଟି କରିଛନ୍ତି ସେଇ ଜାଣିଲେ ଜାଣିଥିବେ; ମୋତେ କହିବାର କୌଣସି ଅର୍ଥ ନାହିଁ । କିନ୍ତୁ ନିଜ ଶୋଇବାଘର ଖଟତଳୁ ଯେତେବେଳେ ଜିନିଷ ହରଣଗ୍ଲ ହେଲଣି ସେକଥା ତାଙ୍କୁ ନିତାନ୍ତ ବାଧ୍ୟ ହୋଇ ମତେ କହିବାକୁ ପଡ଼ୁଛି । କାରଣ, ପୋଲିସକୁ ଖବର ଦେବାକୁ ହେବ କି କଣ କରିବାକୁ ହେବ

ସେକଥା ମୋର ଜାଣିବା ଆବଶ୍ୟକ । ଏସବୁ ସରକାରୀ କଥା..... କାନରେ ପକାଇଦେଲଣ୍ଣ ତାଙ୍କର ଛୁଟି ।

ଯୁଗପତ୍ ବିସ୍ମୟ ଓ ଆତଙ୍କରେ ମୁଁ ସ୍ତବ୍ଧ ହୋଇଗଲି । ମୋର ବାକ୍ୟ ସ୍ଫୁରିଲ ନାହିଁ । କଣ ହେଲ ! ଶୋଇବାଘର ଖଟତଳୁ ? କଣ ? କଣ ଚୋରିଯାଇଛି ?

—ଜଗୁଆ ମା'ର ଚନ୍ଦ୍ରହାର ......ଚୋରି କେଉ...ପନ୍ଦର ଭରି । ଦି'ବର୍ଷର ଦରମା ଜମା କରି ଆମ ବଣିଆ ପାଖରେ ଗତ ସାଲେ ଯେଉଁ ଚନ୍ଦ୍ରହାର ସେ ଗଢିଥିଲ, ସେଇଟା । ଗୋଟାଏ ଛୋଟ ଟିଣ ବାକ୍‌ସରେ ଚାବି ପକାଇ ଶୋଇବାଘର ଖଟତଳେ ରଖିଥିଲ । ମା'ଙ୍କ ମୁଣ୍ଡତଳୁ ପଦାର୍ଥ ନେଇଯିବ ଏତେ ବହପ କାହାର? କିନ୍ତୁ କାଲି ରାତିରେ ଏ ଅସମ୍ଭବ ସମ୍ଭବ ହୋଇଛି । ବାକ୍‌ସ ଖୋଲ ହୋଇ ପଡ଼ିଛି । ଚନ୍ଦ୍ରହାର ନାହିଁ । ଜଗୁଆ ମା ଗୁହାଳ ଘରେ ବସି କାନ୍ଦି କାନ୍ଦି ଅସ୍ଥିର । ଉପାୟ ଆଉ କଣ ? ଫୋନ ଆଡ଼କୁ ହାତ ବଢ଼ାଇଲି ।

ଗୃହିଣୀ ତ ପ୍ରାୟ ମାଡ଼ିଆସିଲେ--ଥାଉ, ଥାଉ, ଫୋନ କରିବା ଆଗରୁ କଥାଟା ଟିକେ ବୁଝିବାକୁ ଚେଷ୍ଟା କର ।

କହିଲେ—ଏତେବେଳଯାକେ ସେ ଯାହା କହିଗଲେ ତାହାର ତାତ୍ପର୍ଯ୍ୟ ବୁଝିବାର କ୍ଷମତା ମୋର ଲୋପ ପାଇଲଣି । ଦିନରାତି ଫାଇଲ ରାମ୍ପି ରାମ୍ପି ମୋର ବୁଦ୍ଧିଶୁଦ୍ଧି ହଜିଲଣି । ଆରେ ବାବୁ, ପୋଲିସକୁ କଣ କହିବ ! କହିଲି ପରା, ଘରଢେଙ୍କି କୁମ୍ଭୀର.....ଘରଆଡ଼େ ଟିକିଏ ଦୃଷ୍ଟି ପଡ଼ୁ ।

ଘରର ଦ୍ୱାର ଅଗଣା ଆଡ଼କୁ ମେଲ । ସେଇ ମେଲ ଦୁଆର ବାଟେ ଚାହିଁଲି । ଉଛବ ଗାମୁଛା ପିନ୍ଧି, ଧୋବ ପଇତାରେ ଚାବିପେଣ୍ଡା ଝୁଲାଇ ଧମ ଧମ ହୋଇ ରୋଷେଇଘରଆଡ଼େ ପଶିଯାଉଛି । ଗାଧୁଆଘରୁ ରଙ୍କର ଲୁଗାକଚାର ଆଓ୍ୱାଜ ଶୁଭୁଛି । ଜଗୁଆ ମା ତ ଗୁହାଳ ଘରେ । ଆଉ କଣ ଦେଖିବି ?

ଗୃହିଣୀ ଘୁଞ୍ଚିଆସି ପାଖ ଗ୍ଭେକିରେ ବସିଲେ ଓ ସରଳ ଭବରେ କେତେକ ଘରକଥା ଯାହା କହିଲେ ତାହାର ମର୍ମାର୍ଥ ହେଉଛି ମୋଟାମୋଟି ଏଇପରି । ଏ କାମ ହେଉଛି ରଙ୍କର, ଆଉ କାହାରି ନୁହେଁ । ଉଛବା ତ ପିଲ୍ଲଦିନୁ ଏଇ ଘରେ ମଣିଷ ହୋଇ ବଢ଼ିଛି; ତା ହାତରେ ଘରର ସବୁ ସମ୍ପତ୍ତି ନିଶ୍ଚିନ୍ତରେ ଛାଡ଼ିଯାଇହେବ । ତା କଥା ବିଲକୁଲ ଉଠିପାରେ ନା । ଜଗୁଆ ମା ତ ଜଗୁଆ ମା—ବିଗ୍ୱରୀ ଦୁଖୀରଙ୍କ ବିଧବା ଝିଅଟିଏ । ମହାର୍ଦ୍ଧ ଦେଇ ସେ ଗୃହିଣୀଙ୍କର ଧର୍ମଝିଅ ହୋଇଛି । କେତେ କଷ୍ଟରେ ପେଟପାଟି ମାରି ଦରମା ଗଣ୍ଡାକ ଜମାଇ ଜମାଇ ଖଣ୍ଡିଏ ଅଣ୍ଟାବିଛା କରିଥିଲ ଯେ ଭଲକରି ତାକୁ ଏ ପର୍ଯ୍ୟନ୍ତ ହେଲେ ପିନ୍ଧିନାହିଁ । ବାକ୍ସରେ ସାଇତି ରଖିଥିଲ । ଯାନିଯାତ୍ରା, ପର୍ବପର୍ବାଣିରେ ଥରେ ଅଧେ ପିନ୍ଧିଥିବ । ରଙ୍କର ଆଖି ଜଗୁଆ ମା ଉପରେ । କିନ୍ତୁ ସେ ତାକୁ ପାଖ ପୂରାଇଦେଲ ନାହିଁ । ମା'ଙ୍କ ପାଖରେ କାନ୍ଦି କହିଲ, "ମା, ମୋତେ ବିଦା କରିଦିଅ; ଏ ରଙ୍କ ଜାଲାରେ ମୁଁ ଆଉ ରହିପାରିବି ନାହିଁ ।" ରଙ୍କ ସେକଥା ଶୁଣିଲ । ସେଇଦିନୁ ତାର ଅଡ଼କସ । ସେଇ ଏ କାମ କରିଛି । ତା ଛଡ଼ା ଆଉ କେହି ନୁହେଁ ।

ବୁଝିବାରେ ମୋର ଗୋଳମାଳ ହୋଇଗଲ । ପ୍ରତ୍ୟାଖ୍ୟାତ ପ୍ରେମ-ନିବେଦନର ଏ ତ ଏକ ଅଦ୍ଭୁତ ରୀତି ! ଏ ତ ଏକ ଚମତ୍କାର ଗପର ଖୋରକ ଯୋଗାଇବ । ମୋର କୌତୂହଳ ବେଶ ଗାଢ଼ ହୋଇ-ଆସିଲଣି । ସିଗାରେଟ ଲଗାଇ କହିଲି, "ହଁ, ତା' ପରେ.......... ?"

" ତା' ପରେ ଆଉ କଣ ? ପୋଲିସରେ ଯଦି ଖବର ଦେବାର କଥା, ଆଉ ଡେରି କର ନାହିଁ । ସେମାନେ ଆସି ଖାନତଲସ କରନ୍ତୁ । ମାଇକିନିଆଟାର ପନ୍ଦର ଭରିର ଜିନିଷଟା କଣ ଘରୁ କୁଆଡ଼େ ଉଭେଇଗଲ୍ଲ ନା ?"

ଫୋନରେ ପୋଲିସ ଇନସପେକ୍‌ଟରଙ୍କୁ ସଂକ୍ଷେପରେ ଘଟଣାଟା ଜାଣଇଲି । ପୋଲିସ ତାଙ୍କର କର୍ତ୍ତବ୍ୟ କରିବେ । ମୋର ଏଥିରେ ଭବିବାର ବା କହିବାର କଣ ଅଛି ? ଅଫିସ ବାହାରିଗଲି ।

ମଝିରେ ଇନ୍‌ସପେକଟର ବାବୁଙ୍କର ଫୋନ୍—ମୋର ଯଦି କୌଣସି ଆପତ୍ତି ନ ଥାଏ, ସେମାନେ ପୂଝାରି, ଗ୍ୱକର ଓ ଜଗୁଆ ମା'କୁ ଥାନାକୁ ନେବାକୁ ଗ୍ୱହାନ୍ତି । ମୋର ଏଥିରେ କାହିଁକି ବା ଆପତ୍ତି ହେବ ? ସେଇ କଥା ଜଣାଇଦେଲି ।

ଅଫିସରୁ ଡେରିରେ ଫେରି ଦେଖିଲି—ଉଛବା ପୂଝାରି ରୋଷଇ ଘରେ । ଗୃହିଣୀ ପ୍ରସାଧନରତା । ଜଗୁଆ ମା ପୁଅକୁ ନେଇ ଦାଣ୍ଡରେ ଖେଳାଉଛି । ଆଉ ରଙ୍କ ? ରଙ୍କକୁ ସେମାନେ ଥାନାରେ ଅଟକାଇଛନ୍ତି । ଉଛବା ଓ ଜଗୁଆ ମା ଘଣ୍ଟାକ ଭିତରେ ଥାନାରୁ ଛାଡ଼ ପାଇ ଫେରି-ଆସିଥିଲେ । ରଙ୍କ ସେତେବେଳୁ ସେଇଠି—ଗାଧୋଇ ନାହିଁ କି ଖାଇନାହିଁ ।

ରାତି ଆଠଟାବେଳେ ରଙ୍କ ଫେରିଲା । ମୁଁ ଲୁଚି ଲୁଚି ତା ମୁହଁ ଆଡ଼େ ଗ୍ୱହିଁଲି—ତା ମୁହଁଟା ଶୁଖି କଳାକାଠ ପଡ଼ିଯାଇଛି । ଚୁପ୍ କରି ସେ ତା ଘରଆଡ଼େ ଗ୍ୱଲିଗଲା ।

ଦାଣ୍ଡପିଣ୍ଡାରେ ଆରାମଚେୟାରରେ ପଡ଼ିରହି ସମସ୍ତ ବ୍ୟାପାରଟା ବୁଝିବାକୁ ଚେଷ୍ଟା କଲି । ପ୍ରାୟ ବର୍ଷେ ହେଲାଣି ଏଇ ରଙ୍କ ଏ ଘରେ କାମ କରୁଛି । ଦିନେ ହେଲେ କାମରେ କୌଣସି ତ୍ରୁଟି ଦୃଷ୍ଟିରେ ପଡ଼ିନାହିଁ । କିଛି କହିବାକୁ ହୁଏନି—ବତେଇବାକୁ ପଡ଼େ ନାହିଁ । କିଏ ଆସିଲା ଗଲା ତାଙ୍କ କଥା ବୁଝିବାଠାରୁ ଛୁଆପିଲାଙ୍କ କଥା, ଗୋରୁଗାଈ, ବାସନମଜା, ଲୁଗାକଗ୍ୱ, ବଜାରହାଟ ସବୁଥିରେ, ରଙ୍କ । କେତେବେଳେ ଗାଧାଏ, କେତେବେଳେ ଖାଏ, କେହି ଜାଣନ୍ତି ନାହିଁ । ରାତି ନ ପାହୁଣୁ ତା'ର କାମ ଆରମ୍ଭ ହୋଇଯାଇଥିବ । ସକାଳୁ ଉଠିଲାବେଳକୁ ନେଛା ନେଛା ବାସନ ମଜାହୋଇ ଥାକ ଥାକ କରି ରଖାଯାଇଥିବ । ଗୁହାଳଘରୁ ପିତଳ ବାଲତିରେ ଦୁଧ ଦୁହିଁ ଆଣି ଥୋଇଦେଇ ଗାଧୁଆଘରେ ପଶିବ । ଧୁଆଘସା ସାରି ତା ପରେ ବଜାର । ସେଠୁ ଫେରି ଛୁଆକୁ ଗାଧୋଇ ପାଧୋଇ ଦେଇ ବେଶ କରିଦେବ । ତା ପରେ ଗେରେଜରେ ଗାଡ଼ି

ପୋଛା, ରେଡିଏଟର ଖୋଲି ପାଣି ଦେଖିବା, ଜୋତା ପାଲିସ କରି ନିଜ ହାତରେ ମୋଜା ଜୋତା ପିନ୍ଧାଇଦେଇ ତା ପରେ ମା'ଙ୍କ କଥା, ଛୁଆଙ୍କ କଥା, ପୂଝାରିର ବରଦ ଲୁଗାକର୍...। ଦିନ ଗଡ଼ିଯିବଣି ।

ଉଛବା ତା ପାଇଁ ଭତ ବାଢ଼ିଦେଇ ଖାଇବସେ । ରଙ୍କ ଖାଇ ବସୁ ବସୁ ଦିନ ତିନିଟା ।

ବେଳେ ବେଳେ ଭବେଁ, ରଙ୍କ ନ ଥିଲେ ଏ ଘରଟା ଚଳନ୍ତା କିପରି ? ଯେତେବେଳେ ମନଟା ତା ଉପରେ ଅତ୍ୟଧିକ ପ୍ରସନ୍ନ ହୋଇଯାଏ, ଭବିଯାଏଁ—ଲୋକଟା ତ ନିଜ ପରିସର ଭିତରେ ଗୋଟିଏ ବଡ଼ ମଣିଷ । ଆପତ୍ତି ନାହିଁ, ଅଭିଯୋଗ ନାହିଁ, ରାତିଦିନ ଖଟି ଚ୍ଲିଛି । ମୁହଁରେ କଥା ନାହିଁ, ପ୍ରଶ୍ନର ନାହିଁ; ତା କାମ ବାଛିଦେବାକୁ ବା ବିରକ୍ତ ହେବାକୁ କାହାରିକୁ ତିଳେହେଲେ ସେ ସୁଯୋଗ ଦେଉନାହିଁ । ଆତ୍ମସମ୍ମାନ ଜ୍ଞାନ ଯଥେଷ୍ଟ ଅଛି ଲୋକଟାର । ଏହିଭଳି ନୀରବ କର୍ମୀ ଯଦି ପ୍ରତ୍ୟେକ କ୍ଷେତ୍ରରେ ମିଳନ୍ତେ ତା ହେଲେ ଦେଶଟା.........

ହଠାତ୍ ଚିନ୍ତାସ୍ରୋତରେ ବାଧା ପଡ଼ିଲା । ଗୃହିଣୀ କହୁଛନ୍ତି, "ତୁମେ ଏଇଠି ବସିଛ, ମୁଁ ସିଆଡ଼େ ଖୋଜିହେଉଛି ! ଆଜି କଣ ଖିଆପିଆ ହେବ ନାହିଁ କି ? ଗତି ବହୁତ ହେଲାଣି ।"

ପଚାରିଲି, "ରଙ୍କ ଖାଇଲାଣି ?"

"ନା"—ଗୃହିଣୀଙ୍କ କଣ୍ଠରେ ପୂର୍ବର ଉତ୍ତାପ ନାହିଁ । ଲୋକଟା ତା ହେଲେ ଦିନତମାମ ଉପାସ ରହିଲା !

"ମୁ ତ ଡାକି ଡାକି ଆସିଲିଣି, ତୁମେ ଏଥର ଚେଷ୍ଟା କରି ଦେଖ ।"

ଉଠିଗଲି । ରଙ୍କ ଘର ଅନ୍ଧାର । କବାଟ ଆଉଜା ହୋଇଛି ।

ଡାକିଲି, "ରଙ୍କ !"

"ଆଜ୍ଞା !"

"କିରେ, ଖାଇବୁ ଆ । ଦିନସାରା ଖାଇନାହୁଁ ପରା !"

ଉତ୍ତର ନାହିଁ । ଅନ୍ଧାରଘରୁ ଶୁଭୁଛି ଚପା ନିଶ୍ୱାସ, କୋହ । ଅଳ୍ପ କବାଟ ଖୋଲି ଭିତରକୁ ଚାହିଁଲି—ତକିଆରେ ମୁହଁ ଗୁଞ୍ଜି ରଙ୍କ ଫୁଲି ଫୁଲି କାନ୍ଦୁଛି ।

ଗୃହିଣୀଙ୍କୁ ପଚାରିଲି—"ଇଗୁଆ ମା କଣ କରୁଛି ?"

"ସେଘରେ ଶୋଇଛି । ତା ମୁଣ୍ଡ ବୁଲଉଛି । ସେ ବି ଖାଇବ ନାହିଁ ।"

"ଆଉ ତୁମେ ?"

"ମୋ କଥା ତୁମକୁ ଭବିବାକୁ କିଏ କହୁଛି ?"

ଫୋନ୍ ଉଠାଇ ଥାନାକୁ ଡାକିଲି । ଥାନାବାବୁ ଦୁଃଖ ପ୍ରକାଶ କରି କହିଲେ—କିଛି କ୍ଲୁ ମିଳୁନାହିଁ, ସାର୍ ! ତଥାପି ଚେଷ୍ଟା ଚାଲିଛି । ଚୋରମାଲ ଯେଉଁମାନେ ରଖନ୍ତି ସେମିତିକା କେତେଟା ଜାଗା ତାଙ୍କ ନଜରରେ ଅଛି । ଯତ୍ନ ଓ ଚେଷ୍ଟାର ଅଭବ ନାହିଁ । ଯାହା କିଛି ସମ୍ଭବ ସବୁ କରଯାଉଛି......ଇତ୍ୟାଦି ଇତ୍ୟାଦି ।

ବତୀ ଲିଭଇ ଶୋଇପଡ଼ିଲି । ଗୃହିଣୀ ଜାଣନ୍ତି, ଏ ପରିସ୍ଥିତିରେ ମୋତେ ଖୁଆଇବାକୁ ଚେଷ୍ଟା କରିବା ବୃଥା । ପାଖଘରେ ସେ ପିଲାଙ୍କୁ ନେଇ ଶୋଇଲେ ।

ଗଡ଼ପଡ଼ ହେଉ ହେଉ ଟିକେ ଛାଇନିଦ ଲାଗିଯାଉଥିଲା ବୋଧହୁଏ, ହଠାତ୍ ନିଦ ଭାଙ୍ଗିଗଲା । ଧୀର ଚପା କଣ୍ଠରେ କିଏ ଡାକୁଛି—"ମା,ମା !"

ଏ ତ ରଙ୍କର ଡାକ । ସଙ୍ଗେ ସଙ୍ଗେ ଶୁଣିଲି, ଗୃହିଣୀ କହୁଛନ୍ତି, "କିଏ, ରଙ୍କ ! କଣ କିରେ ?"

କିଛି ସମୟ ଚୁପ୍‌ଚାପ୍ । ଗୃହିଣୀ ପୁଣି ପଚାରିଲେ—"କିରେ, କଣ କହୁଛୁ ? ଖାଇବୁ ଯା । ତୋ ଭତ ଅଲଗା କରି ରୋଷେଇଘରେ ରଖିଦେଇ ଆସିଚି ।"

"ମା, ମୁଁ ଯାଉଚି ।"

"କୁଆଡ଼େ ଯିବୁ ? ତୋ ମୁଣ୍ଡ ଖରାପ ହୋଇଗଲାଣି ନା କ'ଣ ?"

"ନା ମା, ମୁଁ ଆଉ ଚାକିରୀ କରିବି ନାହିଁ । ରାତି ପାହିଲେ ମୁଁ ଚାଲିଯିବି ।"

"ହଉ, ଯିବୁ ତ-ଯିବୁ । ସକାଳ ହେଉ, ବାବୁ ଉଠନ୍ତୁ । ତୋର ଦି' ମାସର ଦରମା ହେଲାଣି । ଟଙ୍କାପଇସା ବୁଝିନେବୁ । ତା'ପରେ ସିନା ଯିବୁ !"

ରଙ୍କ କିଛି ସମୟ ଚୁପ୍ ରହି ଧୀରେ ଧୀରେ କହିଲା "ମା, ମୋର ଦରମା ଟଙ୍କା ଜଗୁଆ ମା'କୁ ଦେଇଦେବେ ।"

ଗୃହିଣୀ ଚୁପ୍ । ରଙ୍କର ଶେଷକଥା କାନରେ ବାଜିଲା—"ମୁଁ ଜୁହାର ହେଉଚି,ବାବୁଙ୍କୁ ଜୁହାର ହେଉଚି, ମା, ମୁଁ ଯାଉଚି ।" ଆଉ ସେ କହି-ପାରୁନାହିଁ । ସ୍ୱର ବିକୃତ ଶୁଭୁଚି, ଯେପରି ଅଜସ୍ର କାନ୍ଦୁଚି ଲୋକଟା ।

ଜଗୁଆ ମା'କୁ ଦରମା ଟଙ୍କା ଦେଇଦେବାକୁ କହିଲା ନା ! ତା'ହେଲେ ଦୋଷ ମାନିନେଲା; ଅପରାଧ ସ୍ୱୀକାର କଲା । ଉଠିବି କି ? ଥାନାକୁ ଜଣାଇଦେବି କି ? ତୁରନ୍ତ ଆସି ଗିରଫଦାର କରି ନେଇ-ଯାଆନ୍ତୁ । କିନ୍ତୁ ଉଠିପାରିଲି ନାହିଁ । ଆଳସ୍ୟ ନା ଆଉ କିଛି ? ମୁଣ୍ଡ ଭିତରେ କ'ଣ ସବୁ ଯେପରି ଗୋଳମାଳ ହୋଇଯାଉଛି । ଆଚ୍ଛା, ଥାଉ, ରାତି ପାହୁ ।

ସକାଳେ ଡେରିରେ ନିଦ ଭାଙ୍ଗିଲା । ଉଠି ଶୁଣିଲି, ରଙ୍କ ରାତିରୁ ଚାଲିଯାଇଛି । ଆମ ଜିନିଷପତ୍ର କିଛି ନେଇନାହିଁ । ପାଟଣାରୁ ଯେଉଁ ନାଲି କମ୍ବଳଟା ତାକୁ ଆଣି ଦେଇଥିଲି ସେଟା ଭଙ୍ଗା ହୋଇ ଗୋଟାଏ କୋଣରେ ରଖାଯାଇଛି । ସାଙ୍ଗସାଥୀଏ କହିଲେ, ମୁଁ ନିପଟ ଓଲୁଟାଏ, ଜାଣୁ ଜାଣୁ ଚୋରଟାକୁ ହାତଛଡ଼ା କରିଦେଲି ।

ସବୁ ଶୁଣିଲି । ତଥାପି ମନରୁ ଗ୍ଲାନି ଦୂର ହେଲା ନାହିଁ । ରଙ୍କର ସେଇ ଅସ୍ପଷ୍ଟ ରୁଦ୍ଧ କଣ୍ଠ "ମା, ମୁଁ ଯାଉଚି" ମଝିରେ ମଝିରେ କାନରେ ବାଜିଉଠେ । ମୁଁ ଅନ୍ୟମନସ୍କ ହୋଇଯାଏ ।

ସବୁ ପୁଣି ପୂର୍ବପରି ଚାଲିଲା । ନୂଆ ଚାକର ଆସିଲା । ରଙ୍କର ଅଭାବ କ୍ରମେ କ୍ରମେ ଅଭ୍ୟାସ ହୋଇଗଲା । ଦିନ ଗଡ଼ିଚାଲିଲା ।

ପ୍ରାୟ ମାସେ ଖଣ୍ଡେ ପରେ । ଅଫିସରୁ ଫେରି ଦେଖେଁ, ଘରଟା କେମିତି ଅଦ୍ଭୁତ ଭାବରେ ଚୁପ୍ ଚାପ୍ । କେହି କୁଆଡ଼େ ଦେଖାଯାଉ-ନାହାନ୍ତି । ଡ୍ରଇଁ ରୁମ୍ ପାର ହୋଇ ଭିତରକୁ ଆସି ଦେଖେଁ, ଚେୟାରରେ ସ୍ତବ୍ଧ ହୋଇ ବସିଛନ୍ତି ଗୃହିଣୀ । ଗୋଡ଼ ପାଖରେ ଜଗୁଆ ମା—ଆଖିରେ ଲୁଗା ମାଡ଼ି କଇଁ କଇଁ ହୋଇ କାନ୍ଦୁଛି । ତଳେ ଥୁଆ ହୋଇଛି ଚନ୍ଦ୍ରହାର । ଗୃହିଣୀ ଉଠି ଦୀର୍ଘ ନିଶ୍ୱାସ ପକାଇ ଅତି ଅଳ୍ପ କେଇପଦ କଥାରେ ବୁଝାଇଦେଲେ ସମସ୍ତ ରହସ୍ୟ । ଦି' ଅଢ଼େଇ ମାସ ତଳେ ଯେଉଁ ଦିନ ଆମ ଘରେ କଣ ଗୋଟାଏ ବଡ଼ ପର୍ବ—ବହୁତ ଲୋକ ଆସିଥାଆନ୍ତି ଖାଇବାକୁ—ବହୁତ ମାଇପେ ବି, ଜଗୁଆ ମା'ର ଝିଆରୀ ସେଦିନ ଆସିଥିଲା । ତା' ଅଣ୍ଟା ଖାଲି ଦେଖି ଜଗୁଆ ମା ତରବରରେ ମା'ଙ୍କ କାନିରୁ ଚାବି ଖୋଲିନେଇ ବାକ୍ସ ଖୋଲି ତା' ଚନ୍ଦ୍ରହାର କାଢ଼ି ଝିଆରୀ ଅଣ୍ଟାରେ ପିନ୍ଧାଇଦେଇଥିଲା । ତା' ପରଦିନ ଝିଆରୀ ଗଲା ଜୋଇଁଙ୍କ ସଙ୍ଗରେ ପୁରୀ । ଜୋଇଁ ସେଠି କାମ କରନ୍ତି । କାଲି ରାତିରେ ସେ ଫେରିଆସିଛି । ଆଜି ଆସିଥିଲା ପିଉସୀକୁ ଦେଖିବାକୁ । ଚନ୍ଦ୍ରହାର ଫେରାଇଦେଇ ଯାଇଛି । ଜଗୁଆ ମା ବାଉଳିଟା । ତା' ମନରେ କିଛି ରହେ ନାହିଁ ।

ବିହ୍ୱଳ କଣ୍ଠରେ ପଚାରିଲି, "ରଙ୍କର ଦି' ମାସର ଦରମା ?"

ଗୃହିଣୀ ଜଣାଇଲେ ଯେ ତା'ର ଦୁଇଗୁଣ ଟଙ୍କା ରଙ୍କର ଘର-ଠିକଣାରେ ସେ ଆଜି ମନିଅର୍ଡର କରି ପଠାଇଦେଇଛନ୍ତି ।

କହିଲି, "ସେ ତା ଗାଁରେ ଥିଲେ ତ ?"

ଭାରୀ ଗଳାରେ ଗୃହିଣୀ କହିଲେ, "ମୁଁ ଜାଣେ, ସେ ଘରେ ଥିବ । ସେ ଆଉ କେଉଁଠି ଚାକିରୀ କରିବ ନାହିଁ—ମୋତେ ସେ କହିଯାଇଛି ।"

# ପୁରୀ ବାହୁଡ଼ା

ଭୋର ସାଢ଼େ ପାଞ୍ଚଟାରେ ଆମର ପୁରୀ ଛାଡ଼ିବାର କଥା କିନ୍ତୁ ସାତଟା ପଞ୍ଚତ୍ରିଶରେ ଦେଖାଗଲା, ହୋଲ୍‌ଡ୍ ଅଲ୍ ମୁକୁଳା ହୋଇ ପଡ଼ିରହିଛି । ଶିଶୁକୁଳ ଅଭୁକ୍ତ ଓ ସ୍ୱୟଂ ଗୃହିଣୀ ଓ ବନ୍ଧୁପତ୍ନୀ ରନ୍ଧନଶାଳା-ବର୍ତ୍ତିନୀ । ମୋର ଧୈର୍ଯ୍ୟଚ୍ୟୁତି ଘଟିବାର କଥା—ଘଟିଲା । ଗୃହିଣୀ ବୋଧହୁଏ ଏଥିପାଇଁ ପ୍ରସ୍ତୁତ ଥିଲେ । କର୍କଶ କଣ୍ଠରେ ଯାହା ଉତ୍ତର ଶୁଣିଲି ତା'ର ସାରାଂଶ ଏୟା ଯେ, ଅପଦାର୍ଥ ଡ୍ରାଇଭର ହମିଦ୍‌ର ସକାଳୁ ପତ୍ତା ନାହିଁ—ଯେପରି ଲୋକ ସେହିପରି ତାଙ୍କ ଡ୍ରାଇଭର—ସେକଥା ନ ବୁଝି ତାଙ୍କ ଉପରେ ମୋର ଗରମ ହେବାରେ କୌଣସି ପୌରୁଷ ନାହିଁ । ମୋର ଭୁଲ, ହମିଦର ଭୁଲ; ଅତଏବ ନୀରବରେ ସମୟ ଗଡ଼ି ଚାଲିଲା ।

ଠିକ ନଅଟା ବେଳେ ଆମ ଗାଡ଼ି ବାସ୍ତବିକ ପୁରୀ ଛାଡ଼ିଲା । ସେତେବେଳେ ବୁଝାଗଲା ଯେ, ସାଢ଼େ ପାଞ୍ଚଟାରୁ ନଅଟା କରିବାରେ

•

ଗୃହିଣୀ ଯେ ପୁରପୂରି ଦାୟିତ୍ୱ ଓ ଦୋଷଶୂନ୍ୟ ତା' ନୁହେ । କାରଣ ଭ୍ରମବଶତଃ ରତିରୁ ମହାପ୍ରସାଦ କିଣି ନ ପାରି ସକାଳୁ ଗ୍ଯୁକର ଦୌଡ଼ାଇ ଖୁବ୍ ଗୋଟାକେତେ ମହାପ୍ରସାଦ କୁଡ଼ୁଆ ଓ ନିର୍ମାଲ୍ୟ ଅଣାଯାଇଛି । ହମିଦ୍, ଯେ କି ପାଞ୍ଚଟାରେ ଆସି ହାଜର ହୋଇଥିଲା, ଏ ସମ୍ବାଦ ସଂଗ୍ରହ କରି ଏଇ ଅବସରରେ ସେ ବି ବାହାରି ଯାଇଥିଲା । ମହାପ୍ରସାଦ ସଙ୍ଗେ ସଙ୍ଗେ ସେ କିନ୍ତୁ ଫେରିଆସିଥିଲା । ତେଣୁ କଥା କଟାଇ ପ୍ରଥମ କେତେ ମାଇଲ କେବଳ ଅପ୍ରାସଙ୍ଗିକ ଏଣୁ ତେଣୁ କହି କହି ଯେତେବେଳେ ନିତାନ୍ତ କ୍ଳାନ୍ତ ହୋଇପଡ଼ିଲି, ଦେଖିଲି, ଗୃହିଣୀଙ୍କର ମୁଖ ସାଂଘାତିକ ଅପ୍ରସନ୍ନ—ଦାନ୍ତରେ ନଖ କାଟୁଛନ୍ତି । ସନ୍ଦିଗ୍ଧ ଦୃଷ୍ଟି ତାଙ୍କର ଏଣେ ତେଣେ ଘୁରୁଛି । ଅନନ୍ୟୋପାୟ ହୋଇ ମୁଁ ହମିଦକୁ ହାଙ୍କି କହିଲି, 'ରୋକୋ !' ଗାଡ଼ି ଅଟକିଗଲା । ଗୃହିଣୀ କହିଲେ, "ଗାଡ଼ି ଭିତରେ କେମିତିକା ଗୋଟେ ଆଇଁସିଆ ଗନ୍ଧ ! ଗାଡ଼ି ଭିତରେ ମହାପ୍ରସାଦ ରହିଛି....ହେ ଜଗନ୍ନାଥ !" ଦୁଇ କର ମସ୍ତକରେ ଲଗାଇ ସେ ଆଖି ବୁଜିଲେ । ମୁଁ ବି ଦୀର୍ଘ ନିଶ୍ୱାସଟାଏ ଟାଣି ଅନୁଭବ କଲି ଗୃହିଣୀଙ୍କର ଉକ୍ତିର ସତ୍ୟତା ! ବାସ୍ତବିକ କିପରି ଗୋଟାଏ ଆଇଁସିଆ ଗନ୍ଧ ରହି ରହି ନାକରେ ଲଗୁଛି ! 'ହମିଦ ?'—ମୁଁ ପ୍ରଶ୍ନସୂଚକ କଣ୍ଠରେ ଡାକିଲି । ହମିଦ୍ ଗାଡ଼ିରେ ଷ୍ଟାର୍ଟ ଦେଇ ମନକୁ ମନ କହିହେଲା ଯେ ଏ କିଛି ନୁହେଁ—ଗାଡ଼ି ଗେରେଜ୍‌ରେ ଥିଲାବେଳେ ମୂଷାମୂଷି କିଛି ପକାଇ-ଦେଇଥିବେ; କଟକ ପହଞ୍ଚିଲେ ସେ ସଫାସୁତୁରା କରି ଗାଡ଼ିକୁ ବିଲକୁଲ ନିର୍ମଳ କରିଦେବ ।

ଗୃହିଣୀଙ୍କର ସନ୍ଦେହ କଟିଗଲା ବୋଧହୁଏ, ସେ କୌତୁକ କରି ବାନ୍ଧବୀଙ୍କୁ ଠେଲିଦେଇ କହିଉଠିଲେ, "ମୋର କଣ ମନେ ହେଉଥିଲା ଜାଣିଚ ନା ? ପୁରୀରେ ଶୁଖୁଆ ଯେମିତି ଶସ୍ତା, ହମିଦ ହେଲେ ଦି'ଟା ନେଇଯାଉଚି—ପୁରୀର ଯେଉଁ ଅସଲ ଶୁଖୁଆ । ମହାପ୍ରସାଦ ସଙ୍ଗେ ଶୁଖୁଆ !! ଇଲେ, ବୋପା !"

ଗୃହିଣୀ ଏହା କହିବା ସଙ୍ଗେ ସଙ୍ଗେ ମୋର ଦୃଷ୍ଟି ପଡ଼ିଲା– ହମିଦର ପିଠି ପାଖରେ ଗୁଞ୍ଜା ହୋଇ ରହିଛି ଏକ ଛୋଟିଆ ମୁଣି; ହମିଦ ତା' ଉପରେ ପ୍ରାୟ ମାଡ଼ି ଜାକି ହୋଇ ବସିଛି । ସେ ମୁଣିଟା କ୍ରମଶଃ ଅଦୃଶ୍ୟ ହୋଇଯାଉଛି । ଗୃହିଣୀ କହି ଗ୍ଲଲିଛନ୍ତି–"ଇମିତି ଜଣେ, ବାପା କହୁଥିଲେ, ମଟରରେ ମହାପ୍ରସାଦ ସଙ୍ଗେ ଶୁଖୁଆ ନେଉଥିଲା ଯେ ବାଟରେ ମଟର ଓଲଟିଗଲା । ଯାହା କୁହ, ମୋର ଭରି ଭୟ ହୋଇଯାଇଥିଲା । କିନ୍ତୁ ହମିଦ ଆମର ମୁସଲମାନ ହେଲେ କଣ ହେବ, ଆମ କଥାସବୁ ଜାଣିଗଲାଣି

ହମିଦ ସ୍ଥିରଦୃଷ୍ଟିରେ ଆଗକୁ ଚାହିଁ ଗାଡ଼ି ଛାଡ଼ିଛି । ବହୁକାଳ ଅବହେଳିତ କ୍ଷତବିକ୍ଷତ ରାସ୍ତା ଉପରେ ଆମ ଗାଡ଼ି ନାଚିକୁଦି ଛୁଟିଛି । ହୁ ହୁ ପବନ ପିଟୁଛି । ଆଇଁସିଆ ଗନ୍ଧ କମିଆସିବା ସଙ୍ଗେ ସଙ୍ଗେ ଗୃହିଣୀଙ୍କର ଓ ତାଙ୍କ ବାନ୍ଧବୀଙ୍କର ବାକ୍‌ସ୍ଫୂର୍ତ୍ତି ବଢ଼ିଗ୍ଲଲିଛି । କେବଳ ମୋର ଦୃଷ୍ଟି ଫେରି ଫେରି ହମିଦର ପୃଷ୍ଠଦେଶବର୍ତ୍ତୀ ଅପସୃୟମାନ ଥଳିଟି ଉପରେ ନିବଦ୍ଧ ହୋଇ ରହିଛି । ମନ ଭିତରେ ଘୋର ସଂଶୟ-କଳୁଷ ଘୋଟୁଛି । ସମୟ ସମୟରେ ସତ ହେଲାପରି ଆଖି ଆଗରେ ବିଭୀଷିକା ଦେଖୁଛି–ମଟର ମୋଡ଼ ଭଙ୍ଗୁ ଭଙ୍ଗୁ ଓଲଟିଗଲା–ହମିଦ ତା'ର ଥଳି ସହିତ ଛିଟିକି ପଡ଼ିଲା–ଆମେସବୁ ମଟର ତଳେ ଚ୍ଛପା ପଡ଼ିଗଲୁଁ– ତା' ପରେ ସବୁ ଶେଷ !

ନାଃ, ଏଇ କାଣ୍ଡଜ୍ଞାନହୀନ ହମିଦଟାକୁ ବିଦାୟ ଦେବାକୁ ହେବ । କି ସାଂଘାତିକ ଏଇ ଲୋକଟା ! ଟିକିଏ ହେଲେ ବୁଦ୍ଧି ବିବେକ ନାହିଁ । ଅଥଚ ଦଶ ବରଷ ହେଲା ମୋ ପାଖରେ ଚ୍ଛକିରି କରି ହେଇଟି ତା ବାଳ ପାଚିଲାଣି । ହମିଦର ନିଷ୍କଳ ମୁଣ୍ଡଟା ଷ୍ଟିଅରିଂ ହୁଇଲ୍ ଉପରେ ଉଦ୍‌ଗ୍ରୀବ ହୋଇ ବାହାରକୁ ଚାହିଁରହିଛି–କି ନିଷ୍ଠୁର..ଓ ଭୟଙ୍କର ! କାନ-ତଳେ ଗୋଟାଏ ଗଭୀର କ୍ଷତ–ବୋଧହୁଏ ଏଇପରି ଏକ ଅବିମୃଷ୍ୟକାରି-ତାର ଫଳ ।

•

ଭରସି ହମିଦକୁ ପଚାରିପକାଇଲି, "ହମିଦ, ତୁମର ଏଇ କାନତଳେ ଏତେ ବଡ଼ ଏଇ ଦାଗଟା କଣ ?"

ହମିଦ ସହଜ କଣ୍ଠରେ ଉତ୍ତର ଦେଲା, "ହଜୁର, କଲିକତାରେ ଗୋଟେ ଗାଡ଼ି କଟାଉ କଟାଉ ଟେଲିଗ୍ରାଫ୍ ଖୁଣ୍ଟିରେ ଧକ୍କା ଲାଗିଗଲା; ଗାଡ଼ି ସ୍ପିଡ୍‌ରେ ଥିଲା, ସମ୍ଭାଳି ହେଲା ନାହିଁ । ସେ ବହୁଦିନର କଥା, ସାହେବ !"

ଗାଡ଼ି ୪୦ ଏମ୍. ପି. ଏଚରେ ଛୁଟିଛି । ହମିଦର ହାଡୁଆ ମୁଣ୍ଡ ଉପରେ ଧଳା ପାଚିଲା ବାଳ କେଇ କେରା ଫୁର ଫୁର ହୋଇ ପବନରେ ଉଡୁଛି । ପିଠିତଳ ଥଳିଟି ସଂପୂର୍ଣ୍ଣ ନିଶ୍ଚିହ୍ନ ହୋଇଗଲାଣି । ଭାବିଲି, ହମିଦକୁ ସ୍ପଷ୍ଟ କହିଦିଅନ୍ତି ଥଳିଟାକୁ ବାହାରକୁ ପକାଇଦେବାକୁ । ମୁଁ ପୁରୀ ଶୁଖୁଆ ଯେତେ ସେତେ ତାକୁ ପରେ ଅଣାଇଦେଇପାରିବି । କିନ୍ତୁ ମନରେ ସାହସ ଖୋଜି ପାଇଲି ନାହିଁ । ଗୃହିଣୀଙ୍କ ଆଡ଼େ ଚାହିଁଲି—ଗୃହିଣୀ ତାଙ୍କ ବାନ୍ଧବୀଙ୍କ ସହ କଥାବାର୍ତ୍ତାରେ ଅଜ୍ଞାନ । ମୋ ପାଟିଭିତରେ ଜିଭ ଶୁଖିଯାଉଛି । ମୁଁ ବଡ଼ ନିଃସଙ୍ଗ ଓ ଏକାକୀ ବୋଧ କରୁଛି । ହମିଦର କଳା ଅପରିଚ୍ଛନ୍ନ ଦୀର୍ଘ ବେକ ଉପରେ ସେଇ ମଥାଟା ମୋତେ ଜଗତର ସବୁଠୁ କୁତ୍ସିତ ବସ୍ତୁ ପରି ଦେଖାଯାଉଛି । ହୁଇଲ୍ ଉପରେ ତା'ର ଶିରବହୁଳ ହାତଟା ଜଙ୍ଗଲର ଜାନୁଆରର ଥାବା ପରି । ଆଶ୍ଚର୍ଯ୍ୟ ହୋଇ ଭାବୁଛି କିପରି ଏଇ କଦର୍ଯ୍ୟ ଲୋକଟାକୁ ମୁଁ ପ୍ରଥମେ ଚାକିରି ଦେଲି ଓ ଦଶବର୍ଷକାଳ ପାଖରେ ରଖିଆସିଲି । କେବଳ ସେତିକି ନୁହେଁ ; ହମିଦ ଆମ ସମସ୍ତଙ୍କର ପ୍ରିୟପାତ୍ର । 'ହମିଦ' 'ହମିଦ' ବୋଲି ପିଲାମାନେ ଅସ୍ଥିର । ହମିଦର ସ୍ତ୍ରୀ ମରିଗଲାବେଳେ, ମନେପଡୁଛି, ଗୃହିଣୀ କିପରି ଆଖିରୁ ଲୁହ ଝରାଇ ଶହେ ଟଙ୍କା ହମିଦ ହାତରେ ଧରାଇଦେଇ ତାକୁ ଘରକୁ ପଠାଇଦେଇଥିଲେ ଅନ୍ତ୍ୟେଷ୍ଟିର ଯାବତ ବନ୍ଦୋବସ୍ତ କରିବାପାଇଁ । ସେଇ ହମିଦ ଆଜି ଏୟା କରିବସିଲା ! କୃତଜ୍ଞତା ପରିବର୍ତ୍ତରେ ଏଇ ଘୋର ଅନ୍ୟାୟ ଜାଣିଶୁଣି ସେ କରିପାରିଲା— ଏତେ ସହଜରେ ଚଟକରି ମିଛଟାଏ କହିପାରିଲା ! ହମିଦ ପ୍ରତି, ସମଗ୍ର ମାନବଜାତି ପ୍ରତି ଗଭୀର ବିତୃଷ୍ଣାରେ ମନ ଭରିଉଠିଲା । ଯେଉଁ ଲୋକ

ଅକ୍ଳେଶରେ ଏତେ ବଡ଼ ନୃଶଂସ କାମ କରିପାରେ ସେ ସବୁ କରିପାରେ । ଦରକାର ପଡ଼ିଲେ ସେ ଆମ ସମସ୍ତଙ୍କୁ ହତ୍ୟା ବି କରିପାରେ । ତା'ର ସେଇ ଶୁଖିଲା ହାଡ଼୍ଆ ହାତମୁଠାରେ ଧାରୁଆ ଛୁରୀ ଓ ଆଖିରେ ପାପଆଖିର ବିଷାନ ମୁନିଆ ଚାହାଣି କ୍ଷଣକ ପାଇଁ ଯେପରି ନିଛାଟିଆ ଟାଙ୍ଗର ରାସ୍ତା ଉପରେ ବାଟ ଓଗାଳି ଠିଆ ହେଲା । ମୁଁ ମର୍ମେ ମର୍ମେ ଥରିଉଠିଲି । ଷ୍ଟିଅରିଂ ହୁଇଲ ଉପରେ ହମିଦର ଟାଣୁଆ ମୁଣ୍ଡଟାକୁ ମୁଁ ଯଦି କାଟି ଉଡ଼ାଇଦେଇ-ପାରନ୍ତି..ତା'ର ବେକମୂଳିରେ ମଜଲ ଗୁଞ୍ଜି ଗୁଳି ଫୟାର କରିପାରନ୍ତି.. !

ହମିଦ ଗାଡ଼ିରେ ବେକ୍ କଷିଲା । ଆଗରେ ରାସ୍ତା ପାଖରେ ଗୋଟାଏ ମଟରଗାଡ଼ି ଅଟକି ରହିଛି । ପଛଚକ ଖୋଲା । ଦି ଚାରି ଜଣ ହାମୁଡ଼େଇ ଶୋଇ ତାକୁ ସଜାଡ଼ିବାରେ ଲାଗିଛନ୍ତି । ହମିଦ କବାଟ ଖୋଲି ତଳକୁ ଓହ୍ଲାଇଗଲା । ବିରକ୍ତ ହୋଇ କହିଲି, "ଅଟକିଗଲା କାହିଁକି ? ଚାଲ !" 'ହଜୁର, ଏଇ ଦି ମିନିଟ୍' କହି ହମିଦ ମୋ କଥାକୁ ଅପେକ୍ଷା ନ କରି ଟୁଲ ବେଗ୍ ଖୋଲି ସେଇ ମଟର କାମରେ ଲାଗିଗଲା । ମଟରତଳେ ଲମ୍ବ ହୋଇ ଶୋଇଯାଇ କଣ ସବୁ ଭିଡ଼ାଓଟରା କଲା । ଅନ୍ୟମାନେ ତା' ହାତକୁ ଯନ୍ତ୍ରପାତି ବଢ଼ାଇଦେଉଥାନ୍ତି ଓ ମଟରତଳୁ ହମିଦର ଅସ୍ପଷ୍ଟ ଆଦେଶ ଶୁଭୁଥାଏ । ଏଣେ ଡେରି ହୋଇଯାଉଛି; ଖରା ବଢିଯାଉଛି; ଗୃହିଣୀ ଠିକ କହୁଥିଲେ, ଏଇ ହମିଦ ପାଇଁ ଏତେ ଡେରି ହେଲା । ଶୀଘ୍ର ଯାଇ ପହଞ୍ଚିଲେ ମୋତେ ଅଫିସ କରିବାକୁ ପଡ଼ିବ ଶୀଘ୍ର କେମିତି ନେଇ ଆମକୁ ମୁକାମରେ ପହଞ୍ଚାଇବ ନା ରାସ୍ତାରେ ବାହାଦୁରୀ ଦେଖାଇବାର ଜେଗା ମିଳିଲା ! ପ୍ରକାଶ୍ୟରେ ଗୃହିଣୀଙ୍କୁ କହିଲି, "ଏଥର ପହଞ୍ଚିଲାମାତ୍ରେ ହମିଦକୁ ବିଦା କରିବାକୁ ହେବ; ଲୋକଟା ନିତାନ୍ତ ଦାୟିତ୍ୱହୀନ ।"

ଗାଡ଼ିଟା ରହିଯିବାରୁ ଗନ୍ଧଟା ଟିକେ ପୁଣି ତେଜିଉଠିଲା । ଗୃହିଣୀଙ୍କର ସ୍ନାୟୁରେ ତା କାମ କରୁଥିଲା ବୋଧହୁଏ; ମୋ ସହିତ ସଙ୍ଗେ ସଙ୍ଗେ ଏକମତ ହୋଇଗଲେ । ଯାହା ହେଲା ହେଲା, ଆଉ ନୁହେଁ—ହମିଦର ଚାକିରିର ଏଇଠୁ ଇତି—ଆଜି ଆଉ କେଇ ଘଣ୍ଟା ଯାହା କରୁଛି କରୁ ।

ପୂରା ଦଶ ମିନିଟ୍ ପରେ ହମିଦ ଫେରିଆସିଲା । ଗାଡ଼ି ସଜଡ଼ା ହୋଇଯାଇଛି । ହମିଦ ଆମ ଗାଡ଼ି ଛାଡ଼ିଦେଲା । ଭବିତବ୍ୟ ହାତରେ ମୋର, ଗୃହିଣୀଙ୍କର, ଶିଶୁମାନଙ୍କର ଓ ଗୃହିଣୀଙ୍କ ବାନ୍ଧବୀଙ୍କର ଜୀବନ ଛାଡ଼ିଦେଇ ମୁଁ ନିଶ୍ଚେଷ୍ଟ ହୋଇ ସିଟ୍‌ରେ ଆଉଜି ବସିଲି । ତୀର ବେଗରେ ଗାଡ଼ି ଛୁଟିଛି । ସରୀସୃପ ପରି ଦୀର୍ଘବିଲମ୍ବିତ ରାସ୍ତାକୁ ଆମ ଫୋର୍ଡ ଗାଡ଼ି ଗ୍ରାସ କରି ଚାଲିଛି । ସୂର୍ଯ୍ୟ ପ୍ରଖର ହୋଇଆସୁଛି । କଟକ ବୋଧହୁଏ ଆଉ ଦଶ ବାର ମାଇଲ । ହଠାତ୍ ଟ୍ରାକ୍ ଛାଡ଼ି ଗାଡ଼ି ଏକପଟିଆ ହୋଇ ଅଟକିଗଲା । ଗୋଟିଏ ପଛଚକ ଦବିଯାଇଛି । ଧକ୍କା ଖାଇ ଆମେ ଆଗ ସିଟ୍ ଉପରେ ବାଡ଼େଇହୋଇଗଲୁଁ । ପିଲମାନେ ନିଦରୁ ଉଠି କାନ୍ଦି-ଉଠିଲେ । ହମିଦ ଓହ୍ଲାଇଗଲା । ଆମେ ଓହ୍ଲାଇଗଲୁଁ । ଡାହାଣପଟ ପଛ-ଚକଟା ପଙ୍କଚର ହୋଇଯାଇଛି । ମୁଁ ନିର୍ବାକ୍ ନିଶ୍ଚଳ ହୋଇ ପ୍ରଭୁଙ୍କୁ ସ୍ମରଣ କଲି । ହମିଦ ସଂପୂର୍ଣ୍ଣ ଅବିଚଳିତ ଭାବରେ ଗୋଟିକ ପରେ ଗୋଟିଏ କାମ କରି ଚାଲିଛି: ଷ୍ଟେପିନ୍ ବାହାର କରି ସେଥିରେ ପବନ ଦେଲା, ଜେକ୍ ଲଗାଇ ଗାଡ଼ି ଉଠାଇଲା, ଷ୍ଟେପିନ୍ ଲଗାଇଲା, ଗଜ୍ ପିନ୍ ଦେଇ ପବନ ପରୀକ୍ଷା କଲା, ତା'ପରେ ପୁରୁଣା ଚକଟାକୁ ଯଥାସ୍ଥାନରେ ପଛରେ ଲଗାଇ ସହଜ ସ୍ୱରରେ କହିଲା, "ଚଲିଯେ ହଜୁର !"

ଅତି ଜୋରରେ ଏ ସମସ୍ତଟା ଦଶ ମିନିଟ୍‌ରୁ ବେଶୀ ଲାଗି ନ ଥିବ, ଯେଉଁ ଦଶ ମିନିଟ୍ ମୁଁ ସିଗ୍ରେଟ ଧରାଇ ଗଛ ଛାଇରେ ପଦଚାରଣ କରୁଥିଲି ଏବଂ ଗୃହିଣୀ ଓ ତାଙ୍କ ବାନ୍ଧବୀ କୌଣସି ଏକ ଶାଢ଼ିର ଧାଲି ଡିଜାଇନ୍ ନେଇ ଦିଗ୍‌ବିଦିଗ୍‌ଶୂନ୍ୟ ହୋଇପଡ଼ିଥିଲେ । କିନ୍ତୁ ମୋ ମନ କ୍ଷିପ୍ରଗତିରେ କାମ କରି ଚାଲିଛି । ସ୍ପିଡ୍‌ରେ ଗାଡ଼ି ଥିଲେ ଟକା ଦବିଗଲେ ଗାଡ଼ି ଓଲଟି ଯିବା ବିଚିତ୍ର ନୁହେ । ଭଗବାନଙ୍କ ଅଶେଷ ଦୟାରୁ ସିନା ରକ୍ଷା ପାଇଗଲୁଁ; କିନ୍ତୁ ଆସନ୍ନ ବିପଦର ହୁଏତ ଏଟା ପୂର୍ବାଭାସ ! ଏ ଅନ୍ୟାୟ ଅନାଚାରର ଉପଯୁକ୍ତ ଶାସ୍ତି ତ କଟିଯାଇନାହିଁ, ଆରମ୍ଭ ହୋଇଛି ମାତ୍ର ।

ଗାଡ଼ି ଦ୍ୱିଗୁଣ ବେଗରେ ଛୁଟିଛି   ଖରା ତେଜିଗଲଣି । ଗରମ ପବନ ମୂହଁ ଉପରେ ପିଟି ହୋଇଯାଉଛି । ଘଡ଼ିରେ ସାଢ଼େ ଦଶ । ହମିଦ କହୁଣୀ ଉପରକୁ ଖାକି କମିଜ ଗୋଟାଇନେଇ ଷ୍ଟିଅରିଂ ଉପରେ ଝୁଙ୍କିପଡ଼ି ଗାଡ଼ି ଛାଡ଼ିଛି । ସମସ୍ତେ ନୀରବ । ଇଞ୍ଜିନ୍‌ର ଗୁଞ୍ଜନ ଶୁଣୁ ଶୁଣୁ ଆଖି ବୁଜି ହୋଇ-ଆସୁଛି । × × ଠାସ୍....ସ୍....ସ୍ । ଏଥର ଫେନ୍ ବେଲଟଟା କଟିଗଲା ପରା । ହମିଦ କବାଟ ଖୋଲି ଓହ୍ଲାଇଗଲା । ହମିଦର ମୁହଁ କିପରି ଯେପରି ବିକୃତ ଓ ଅନ୍ଧାର । ତା'ର ଓସାରିଆ କଳା କପାଳ ଉପରେ ଶିରା ଫୁଲି ଉଠିଛି, ଓଠ   ମୋଡ଼ିହୋଇଯାଇଛି । ଆଖି ମିଞ୍ଜି ମିଞ୍ଜି । ଆଙ୍ଗୁଳିରେ କପାଳରୁ ଝାଳ ପୋଛି ସେ କମରରେ ହାତ ଦେଇ ଇଞ୍ଜିନ ଖୋଲି ନିଶ୍ୱାସ ପକାଉଛି ।

ଗୃହିଣୀ ନିଦରୁ ଚମକି ଧଡ଼ପଡ଼ ହୋଇ ଉଠି ପଚାରିଲେ, "କଣ ହେଲା ?" ତାଙ୍କ ବାନ୍ଧବୀ ଝାଉଁଳି ପଡ଼ିଛନ୍ତି । ପିଲାମାନେ ଅସମ୍ଭାଳ । ମୁଁ ହତବାକ୍ ହୋଇ ଶୂନ୍ୟକୁ ଚାହିଁ ରହିଲି । ରାସ୍ତା ସଳଖ ହୋଇ ଆଗକୁ ଲମ୍ବିଯାଇଛି । ଦୂରରେ ଦିଗ୍‌ବଳୟ ଝଲ ଝଲ ହେଉଛି ।

ହମିଦକୁ ଗହୀରେଇ ଚାହିଁ ପଚାରିଲି, "ତା'ପରେ କଅଣ କରାଯିବ, ଭାବୁଛ ?" ହମିଦ ନୀରବ । ମୋ ମନରେ ଏକପ୍ରକାର ବିଦ୍ରୂପ ବାହାରା ହୋଇଉଠୁଛି—ହେବ ନାହିଁ ! ହେବ ନାହିଁ ! ଏତେବଡ଼ ଅନାଚାର ସହିହୁଅନ୍ତା କେମିତି ! ମୁଁ ଜାଣିଥିଲି ପରା !

ହମିଦ ଧୀର ମ୍ଳାନ କଣ୍ଠରେ ମନକୁ ମନ କହୁଛି—"ଫେନ୍ ବେଲ୍‌ଟ ତ ସାଙ୍ଗରେ ନାହିଁ, କଣ କରିବା....?

ପାଁଟିକରି ମୁଁ କହିଲି, "କ'ଣ କରିବା କହି ମୁଣ୍ଡରେ ହାତ ଦେଇ ବସିଲେ କଣ ହେବ ? ଆମେ ଏଇକ୍ଷଣି କରୁଁ କଅଣ ? ପିଲାଗୁଡ଼ା ଅସ୍ଥିର ହେଲେଣି । ତୁମ ଭଳି ଡ୍ରାଇଭର ଯାହାର ଥିବ....ହୁଁଃ, ଆଚ୍ଛା ଅବସ୍ଥାରେ ପଡ଼ିଲା ଆସି ମଣିଷ ।"

•

ଗୃହିଣୀ ବି ସ୍ୱର ମିଳାଇ କହିଚ଼ାଲିଲେ—"ତା'ର ତ ନିଜ କାମ ସାରୁ ସାରୁ ନଥ—ଗାଡ଼ି କଥା ବୁଝିବାକୁ ତାକୁ ବେଳ କେଉଁଠି ? କଣ କରୁଁ ଆମେ ଏଇନା, କୁହ ତ? ଛୁଆମାନେ ଭୋକରେ ଆଉଟି ହେଲେଣି। ମୁଁ ତ କହୁଥିଲି, ଟ୍ରେନରେ......" ଇତ୍ୟାଦି ଇତ୍ୟାଦି ।

ହମିଦ ଏସବୁ ନ ଶୁଣିଲା ଭଳି ମୋତେ କହିଲା, "ହଜୁର, ଏଠି କିଛି କରିହେବ ନାହିଁ । ମୁଁ ଯାଉଛି ଏଇ ଗାଁରୁ ସାଇକଲ ନେଇ କଟକ ଦୌଡ଼ିଯିବି—ଫେନ୍ ବେଲ୍ଟ ଧରି ଏଇ ଘଣ୍ଟାକ ଭିତରେ ଫେରିଆସିବି । ଆଲ୍ଲାଙ୍କ ବରଦ ! ଏଇ ସାମନା ଦୋକାନରୁ ଚ଼ା' ଆଣି ଦିଏଁ ?" ହମିଦ ଆଦେଶ ଅପେକ୍ଷାରେ ଉଦ୍‌ଗ୍ରୀବ ହୋଇ ରହିଲା ।

ମୋର ଧୈର୍ଯ୍ୟହାନି ଘଟିଲା । ଚିତ୍‌କାର କରି କହିଉଠିଲି, "ନା, ନା, ଚ଼ା, ଫା' ଦରକାର ନାହିଁ। ଫେନ୍ ବେଲ୍‌ଟଟାଏ ବି ସାଙ୍ଗରେ ରଖିନାହଁ । କି କାମ କରୁଛ ? ବୋକା କେଉଁଠିକାର ! "

ହମିଦର ମୁହଁ ଝାଉଁଳିପଡ଼ିଲା । ତାକୁ ଏଇ ଗତ ଦଶବର୍ଷ ଭିତରେ ମୁଁ କେବେ କଡ଼ା କଥା କହିବାର ମନେପଡୁନାହିଁ । କିନ୍ତୁ ବର୍ତ୍ତମାନର ପରିସ୍ଥିତିରେ ଲୋକଟାକୁ କ୍ଷମା କରଯାଇପାରେ ନାହିଁ । ଏଇ କେଇ ମାଇଲ ରାସ୍ତା ଯାଉଁ ଯାଉଁ ଚକା ଫାଟିଯିବା, ଫେନବେଲ୍‌ଟ୍ ଛିଡ଼ିଯିବା ବିଲକୁଲ ବିଚିତ୍ର କଥା । ମହାପ୍ରସାଦ ସଙ୍ଗେ ଏକ ଗାଡ଼ିରେ ଶୁଖୁଆ.... ହରିବୋଲ ! ଆମେ ଯେ ଜୀବନ ଧରି ଏପର୍ଯ୍ୟନ୍ତ ବଞ୍ଚିଛୁ ଏଇଟା ସବୁଠୁ ଆଶ୍ଚର୍ଯ୍ୟ କଥା । କହୁଚି, ଆଲ୍ଲାଙ୍କ ବରଦ....ହୁଃ !

ଠିକ ଏଇ ସମୟରେ ପଛରୁ ମଟର ହର୍ଣ୍ଣ ଶୁଭିଲା । ହମିଦର ମୁଖ ଉଜ୍ଜ୍ୱଳ ହୋଇଉଠିଲା । ଆନନ୍ଦରେ ହସିଉଠି ସେ କହିଲା, "ହଜୁର, ଆଉ ଚିନ୍ତା ନାହିଁ । ସେଇ ଗାଡ଼ିଟା, ହେଇ, ଆସିଲାଣି । ସେଥିରେ ସମସ୍ତେ ଚ଼ାଲିଯିବେ । ମୁଁ ଗାଡ଼ି ଜଗିଥିବି । ଫେନ୍‌ବେଲ୍‌ଟ ପଠାଇଦେଲେ ମୁଁ ଗାଡ଼ି ନେଇଯିବି ।"

ସେଇ ଯେଉଁ ଭଙ୍ଗା ଗାଡ଼ିଟା ହମିଦ ବାଟରେ ଓହ୍ଲାଇଯାଇ ସଜାଡ଼ି ଦେଇ ଆସିଥିଲା ସେଇ ଗାଡ଼ିଟା ଆମ ପଛରେ ଆସି ଛିଡ଼ା ହୋଇଛି । ହମିଦ ତା' ଭିତରକୁ ପଶି ଝଡ଼ାଝଡ଼ି କରି ଆମ ପାଇଁ ଜେଗା ଠିକ୍ କରିଦେଲା; ଆମେ ବସିଲୁଁ ।

ଦି' ପଟକୁ ଦୋହଲି ଦୋହଲି ରଥ ଚାଲିଲା ଭଳି ବଡ଼ ଜୋର ଦଶ ମାଇଲ ସ୍ପିଡ୍‌ରେ ଏଇ ଗାଡ଼ିଟା ଚାଲିଛି । ଏପଟ ସେପଟ ବାଡ଼େଇ ହୋଇ ହୋଇ, ରୋଗୀ ପିତା ଔଷଧ ଢୋକିପକାଇଲାଭଳି ଆଖିକାନ ବୁଜି ଆମେ ମୁହୂର୍ତ୍ତ ଗଣୁଛୁଁ....ଆଉ କେତେ ଦୂର । ଗୃହିଣୀଙ୍କ ଆଡ଼େ ଚାହିଁହେଉନାହିଁ ! ତାଙ୍କ ମୁଖରେ ଗତ ଟ୍ରେଜେଡିର ଗଭୀର ଛାୟା, ଚକ୍ଷୁ ଆର୍ଦ୍ର, ନାସିକା ସ୍ଫୀତ । ହମିଦ ବିରୁଦ୍ଧରେ ଅଭିଯୋଗ କରି କରି ମନ ଓ ରସନା କ୍ଳାନ୍ତ ହୋଇପଡ଼ିଛି । ମୁଁ ସେହି ଅଦ୍ଭୁତ ଯାନର ସଂକୀର୍ଣ୍ଣ ଗବାକ୍ଷ ପଥ ଦେଇ ମାଇଲ ଖୁଣ୍ଟ ନିରୀକ୍ଷଣ କରୁଛି । ପିଲାମାନଙ୍କର ଆର୍ତ୍ତ ଚିତ୍‌କାର ଇଞ୍ଜିନ ଗର୍ଜନକୁ ଲଜ୍ଜିତ କରୁଛି ।

ଘରେ ପହଞ୍ଚିଲାବେଳକୁ ବାରଟା ବାଜିଯାଇଥିଲା । ଫେନ୍‌ବେଲ୍‌ଟ ସଙ୍ଗେ ସଙ୍ଗେ ସାଇକେଲ୍‌ରେ ପଠାଇଦେଇ, ଛୁଟି ଦରଖାସ୍ତ କରି, ପୁଞ୍ଜିଏ ଦହିପଖାଳ ଖାଇ ବିଛଣା ଧଇଲି । ସ୍ଥିର ସିଦ୍ଧାନ୍ତ ହୋଇଗଲା ଯେ ହମିଦକୁ ଆଜି ବିଦା କରିବାକୁ ହେବ—କୌଣସି ଆପତ୍ତି ଉଜୁହାତ ଶୁଣାଯିବ ନାହିଁ ।

କେତେକାଳ ଶୋଇପଡ଼ିଥିଲି ଜାଣେ ନାହିଁ....ହଠାତ୍ ନିଦ ଭଙ୍ଗିଗଲା । ଘଡ଼ିରେ ଦି'ଟା । ଧଡ଼ପଡ଼ ହୋଇ ଉଠି ବାହାରକୁ ଆସିଲି । ପ୍ରଚଣ୍ଡ ଖରା । ନିଆଁ କୁହ୍ରେଇ ହୋଇ ପଡୁଛି । ପୋର୍ଟିକୋରେ ମୋର ଫୋର୍ଡ ଛିଡ଼ା ହୋଇଛି । ହମିଦ ନାହିଁ । ଡ୍ରାଇଭର ସିଟ୍‌ରେ ସେଇ ମଳିଆ ଥଳିଟା ମୁହଁ ମାଡ଼ି ପଡ଼ିରହିଛି ।

ଚାରିଆଡ଼କୁ ଚାହିଁଲି । ସବୁ ନିସ୍ତବ୍‌ଧ—ସମସ୍ତେ ନିଦରେ ଅଚେତ । କାନ୍ଥ ଛାଇରେ କୁକୁରଟା ଜିଭ କାଢି ଧକଉଛି । ମଝିରେ ମଝିରେ ଦମକାଏ

ତାତି ପବନ କାଚ କବାଟ ଉପରେ ପିଟି ହୋଇଯାଉଛି । ଦେଖିଲି, ବାରଣ୍ଡାର ଏକ କୋଣରେ ହମିଦ ଛଟ୍ ହୋଇ ପଡ଼ିରହିଛି । ତା ଚଉଡ଼ା ଛାତିର ଉଠାପଡ଼ା ସଙ୍ଗେ ଘୁଙ୍ଘୁଡ଼ି ବାଜିଉଠୁଛି । ହଠାତ୍ ମୋ ବାମ ହାତର ବୃଦ୍ଧ ଓ ତର୍ଜନୀ ହମିଦର ସେଇ ଥଳିଟିର ନିମ୍ନଦେଶକୁ ଆକ୍ରମଣ କରି ତାକୁ ଉପରକୁ ଟେକି ଧରିଲା । ଦି ତିନି ଖଣ୍ଡ କପଡ଼ା ଖସିପଡ଼ିଲା—ପାଇଜାମା, ଲୁଙ୍ଗି, ଗାମୁଛା । ଶୁଖୁଆ ? ଥଳିଟିକୁ ଅନୁଭବ କରି ଦେଖିଲି, ତା' ଶୂନ୍ୟ । ଯେଉଁ ଗନ୍ଧର ସନ୍ଧାନ ପାଇ ଆମେ ସମସ୍ତେ ମୃତ୍ୟୁର ବିଭୀଷିକା ଆଖି-ଆଗରେ ଦେଖିଥିଲୁଁ ସେ ଗନ୍ଧ ଯେ ଏ ଥଳିନିର୍ଗତ ନୁହେଁ ତା' ସ୍ପଷ୍ଟ । ତା' ହେଲେ...... ?

ପାଖ ଅଫିସଘରେ ଟେଲିଫୋନ ବାଜିଉଠିଲା । ପୁରୀରୁ ବନ୍ଧୁ—ଯାହାଙ୍କ ଘରେ ଆମେ ଅବସ୍ଥାନ କରିଥିଲୁଁ, ସେଇ ବନ୍ଧୁ କହୁଛନ୍ତି, "ଆଛା ଭୁଲା ଲୋକ ତ ତୁମେ ! ଏତେ କଷ୍ଟ କରି ମହାପ୍ରସାଦ ଅଣାଇଲ, ଅଥଚ ସେଗୁଡ଼ିକୁ ସବୁ ଛାଡ଼ିଯାଇଛ ଏଠି ! ବେଶ୍ କରିଛ । ଆମେ ଏଠି ତା'ର ସଦ୍‌ବ୍ୟବହାର କରିଦେଇଥାନ୍ତୁ ଯେ, ତେବେ ନିତାନ୍ତ ଦୟାପରବଶ ହୋଇ ଟ୍ରେନରେ ସେଗୁଡ଼ିକୁ ପଠାଇଦେଇଛୁଁ । ଏଇନା ପହଞ୍ଚିଯିବ ଯେ....

"ଏତେବେଳଯାଏ ଥିଲ କେଉଁଠି ? ମୁଁ ଦି'ଥର ଫୋନ୍ କରି ଏଇ ତୃତୀୟ ଥର ତମକୁ ଧରିଲି । ବାଟରେ ଭୁବନେଶ୍ୱରରେ ଥାକିଗଲ ପରା ! ମୁଁ ଠିକ ସେଇଆ ଅନୁମାନ କରିଥିଲି—ଆଛା, ନମସ୍କାର ।"

ବୈଶାଖର ଝାଞ୍ଜି ପାଖ ଓସ୍ତଗଛ ଡାଳରେ ଚେଇଁଉଠିଲା । ଫୋର୍ଡ଼ର ରେଡିଏଟର ମୁଣ୍ଡରେ ମରୀଚିକାର ଛାୟା ।

# ମିଶାଣରେ ଭୁଲ



ଗୋଧୂଳି ।

ଗୋରୁଖୁରରୁ ଧୂଳି ଉଠି ଅପରାହ୍ନର ଆକାଶକୁ ଛାୟାଘନ କରିବା ପରିବର୍ତ୍ତେ ଚଉଡ଼ା ପିଚ୍ ରାସ୍ତା ଉପରେ ଅଫିସଫେରନ୍ତା ଶହ ଶହ ଶ୍ରମିକ ଓ ବୁଦ୍ଧିଜୀବୀମାନଙ୍କର ଜୋତା, ସାଇକେଲ ଓ ମୋଟର ଗାଡ଼ିର ଭିଡ଼ । ଦୀର୍ଘ ଦିନର ପରିଶ୍ରମ ପରେ ସମସ୍ତେ ଘରମୁହାଁ । ଦିନ ଗୋଟାକରେ ଯେଉଁମାନେ 'ଲଞ୍ଚ୍' ଖାଇଥିଲେ ସେମାନଙ୍କର ଗ୍ଧ' ତୃଷ୍ଣା ଓ ଦଶଟାରେ ତରବରରେ ପିଲାଙ୍କ ସାଙ୍ଗରେ ଇସ୍କୁଲ ଭାତ ଖାଇ ଯାଇଥିବା ବାବୁମାନଙ୍କର ଉଦରଜ୍ୱାଳା ଅସ୍ଥିର କରିପକାଉଛି । ଭିଡ଼ ଭିତରେ ବାଟ କାଟି ବାହାରି-ଯିବାପାଇଁ ତେଣୁ ମୋଟରଗାଡ଼ିର ହର୍ଣ୍ଣ୍ ଅସହିଷ୍ଣୁ, ସାଇକଲ ଘଣ୍ଟି ଅବିରାମ ବାଜୁଛି !

ଚଟି ଘୋଷାରି ଆସୁ ଆସୁ ମୁଁ ଟିକେ ପଛରେ ପଡ଼ିଯାଇଥିଲି । ମୋ ଆଗରେ ଚାଲିଛନ୍ତି ଦଳେ ଯୁବକ । ଟିପା ଟ୍ରାଉଜର, ହାଓ୍ୱାଇନ୍ ସାର୍ଟ, ଲମ୍ବା ବେକ, ହୁଗୁଳା ଚାଲି । କଣ ଗୋଟାଏ ବିଷୟରେ ଆଲୋଚନା ଚାଲିଛି । ଆଲୋଚନା ମାନେ ସମସ୍ତେ ଏକସଙ୍ଗରେ ଚିତ୍କାର କରି କହିବା ଓ କେହି କାହାରିକୁ ନ ଶୁଣିବା । ନିଜ କଥାକୁ ବେଶୀ କରି କହିପାରିଲେ କିଛି ସନ୍ତୋଷ ମିଳୁଛି ପରା । ସବୁ କଥାକୁ ଯୋଡ଼ାଯୋଡ଼ି କଲେ ମୋଟ ଉପରେ ବକ୍ତବ୍ୟ ହେଉଛି ଏଇପରି

"ସେଇ ଯେ ଦଶଟାବେଳେ ଆସିଥିଲି, ଏଇ ଆସି ବାଜିଲଣି ସାଢ଼େ ପାଞ୍ଚ । ପୁଣି ଘରକୁ ଗଦାଏ ଫାଇଲ ପଠାଇଦେଇ ଆସିଛି । ରାତିରେ ବସିଯିବାକୁ ହେବ । ତୁମେ ତ ଜାଣ, ବାସି କାମ ମୋ ଧାତୁରେ ସହିବ ନାହିଁ । ଯେଉଁ ଦିନର କାମ ସେଇଦିନ ସରିବ, ରାତି ବାରଟା ହେଉ କି ଗୋଟେ ହେଉ । କାମ ମୁଣ୍ଡ ଉପରେ ଲଦି ମୁଁ ତ ଜମା ଶୋଇପାରିବି ନାହିଁ । ଦେଖୁଛି ତ ପୁଣି ଆଖି ଆଗରେ ଅନ୍ୟମାନଙ୍କ କଥା । ଚାରିଟା ନ ବାଜୁଣୁ ହାତ ବନ୍ଦ । ଘଣ୍ଟା ଦେଖି ସାଢ଼େ ଚାରିରେ ପାର୍ । ଆମକୁ କଣ ସେମିତିକା କାମ ଆସେ ନାହିଁ ? ଖୁବ୍ ଆସେ । କିନ୍ତୁ ଯାହାର ଯେମିତି ଅଭ୍ୟାସ । ଯା ମନକୁ ଆସିଲା ଦି'ଧାଡ଼ି ଲେଖି ଫୋପାଡ଼ି-ଦେଲେ ବି ଚଳୁଛି । କିନ୍ତୁ ଆମ ଦ୍ୱାରା ସେ କଥା ନ ହୁଏ । କିହୋ, କାମଟା କରିବ, ସେଥିରେ ଯଦି କେହି ଭୁଲଭଟକ ବାହାର କରିଦେଲା ତା'ହେଲେ ମାନ୍‌ଟା ରହିଲା କେଉଁଠି? ମୁଁ ତ ବାବୁ, ଯେଉଁ କାମଟା ଧରିବି ସେଥିରେ କଣ ଗୋଟେ ଛାଡ଼ିହୋଇଯିବ ଏମତି ନ ହୁଏ ।

ଏଇ ଆଜିକା କଥା ଶୁଣୁନା । ଗୋଟାଏ ଅତି ଜରୁରୀ ଚିଠି ଉପରୁ ଆସିଲା ଆଜି ଡାକରେ । ସାହେବ ମୋତେ ସିଧା ଡକାଇପଠାଇ ଚିଠିଟା ଧରାଇଦେଲେ । କହିଲେ—ତିନି ଦିନ ଭିତରେ ଏକ୍‌ସାମିନ କରି ପୁଟଅପ୍ କର । ଆରେ ବାବୁ, କାଲି ପର୍ଯ୍ୟନ୍ତ କାହିଁକି, ଆଜ କିଆଁ ନ ହେବ ? ମଣିଷର ଗୋଟେ ତ ପୁଣି ଜିଦ୍ ଥିବା ଦରକାର । ପକେଟରୁ ବାହାର କଲି ନୋଟ୍

ବହି । ତୁମେ ତ ଜାଣ, ସେଥିରେ ତ ସବୁ 'ରେଫରେନସ୍' ଟିପା ହୋଇ ରହିଛି । ଆଗ ଫାଇଲପତ୍ର ସଂଗ୍ରହ କରିନେଲି । ତା'ପରେ ସବୁ ବିଷୟଟାକୁ ଟିକିନିଖି 'ଏନାଲାଇଜ୍' କରି ପାଞ୍ଚ ପତ୍ର ନୋଟ୍ ଦେଇଆସିଛି । (ଅବଶ୍ୟ ମୋ ଅକ୍ଷରଗୁଡ଼ାକ ଟିକେ ବଡ଼ ବଡ଼) । ତା ସାଙ୍ଗକୁ ପୂରା ଡ୍ରାଫଟ୍, ସେଥିରେ ଆଉ କାହାର କିଛି କରିବାର ନାହିଁ । ଏତକ କରିବାକୁ କେତେ ସମୟ ଲାଗିଲା ପଚାରୁଛ ? ପୂରା ତିନି ଘଣ୍ଟା ।....କେହି ଚିହ୍ନନ୍ତୁ ବା ନ ଚିହ୍ନନ୍ତୁ । ଦେଶ ପ୍ରତି ତ ଗୋଟାଏ ପୁଣି କର୍ତ୍ତବ୍ୟ ଅଛି !

ଫୁର୍ତ୍ତି ଚାଲି ଏଇ ଯୁବକଦଳକୁ ଅତିକ୍ରମ କରି ଆଗେଇଗଲି । କିଛିଦୂର ଗଲା ପରେ କାନରେ ବାଜିଲା ଆଉ ଏକପ୍ରକାର ଧ୍ୱନି । ପଞ୍ଚାଶୋତ୍ତର ପ୍ରୌଢ଼ ତିନି ଚାରି ଜଣ ପାଦ ଗଣି ଚାଲିଛନ୍ତି । ପରିଧେୟ ଧୋତି, ପଞ୍ଜାବୀ ବା ବେକବନ୍ଦ କୋଟ୍ । ମୁଣ୍ଡରେ କ୍ରମକ୍ଷୟିଷ୍ଣୁ ଶୁଭ୍ର କେଶ । ଜଣେ ଯାହା କହୁଛନ୍ତି ଅନ୍ୟମାନେ ତା'ର ପ୍ରତିଧ୍ୱନି କରୁଛନ୍ତି ।

"ସେ ବେଳ ଆଉ କାହିଁ....ସେ ସବୁ କଥା ମନେ ପକାଇଲାବେଳକୁ ଦୁଃଖ ଲାଗୁଛି । କଲେଜରୁ ବି. ଏ., ଏମ୍. ଏ. ପାସ୍ କରି ଯେଉଁ ଟୋକାଗୁଡ଼ାକ ଆସୁଛନ୍ତି ସେମାନଙ୍କର ନାବାଳକି କଟିନାହିଁ । କଣ ବୁଝିବେ, କଣ ଲେଖିବେ ? ଆମ ବେଳର ସେ 'ଏକଜାମିନେସନ୍' କାହିଁ ? ସେ ନୋଟିଂ କାହିଁ ? ଖାଲି କାଗଜ ଖଣ୍ଡଟାକୁ ଫାଇଲରେ ଥୋଇ ଆମ ପର୍ଯ୍ୟନ୍ତ ପହଞ୍ଚାଇଦିଅ, ସେତକ ବି ହେଉନାହିଁ । କଣ କରିବା..? ଭାବିଥିଲୁଁ, ଏ ବୟସରେ ଟିକେ ବସିହେବ, ଘରଦ୍ୱାର ପିଲାପିଲିଙ୍କ କଥା ବୁଝିହେବ । କିନ୍ତୁ କାହିଁ ? ଦି'ଟା ଦିନ ଛୁଟି ନେଇ ଗାଁକୁ ଯାଇଥିଲି ଯେ ଫେରିଲାବେଳକୁ ଯାହା ଯେଉଁଠି ଯେମିତି ଅବସ୍ଥାରେ ଥିଲା ଠିକ୍ ସେଇ ଅବସ୍ଥାରେ ରହିଛି । ସାହେବ ଗରମ । କିହୋ, ଆମେ କଣ ସବୁଦିନେ ଏଇଠି ଥିବା ? ଆମର ତ ପୁଣି ଦେହପା, ଭଲମନ୍ଦ ରହିଛି । ସାହେବକୁ ସେଦିନ ଏ କଥା କହିଲି ଯେ ସାହେବ ବିଗିଡ଼ି ନାଲ୍ । କହିଲା,ପିଲାମାନଙ୍କୁ ଟ୍ରେନିଂ ଦିଅ—ସେମାନଙ୍କ ଉପରେ କଡ଼ା ନଜର ଦିଅ । ଏ ଟୋକାଗୁଡ଼ାକ

ଆମ କଥା ଶୁଣୁଛନ୍ତି ହେଲେ, ଆମେ ତାଙ୍କୁ କହିବୁଁ ! ସିଟ୍‌ରେ ତ ଅଧଘଣ୍ଟାଏ ସ୍ଥିର ହୋଇ ବସିପାରୁନାହାନ୍ତି । ଫଳରେ ଯାହା ଦି'ଧାଡ଼ି ଲେଖି ଫୋପାଡ଼ିଦେଇ ଯାଉଛନ୍ତି ତା କେଉଁ କାମରେ ଲାଗିବ ! ସବୁ ପୁଣି ମୂଳରୁ କରିବାକୁ ହେଉଛି । କୋଡ଼ିଏ ବର୍ଷ ତଳେ ଏଲ୍. ଡି. କିରଣୀ ହୋଇ ଯାହା କରୁଥିଲୁଁ ପୁଣି ସେଇ କାମ ଉଠାଇବାକୁ ହେଉଛି । ଯାହା ଆମେ କରିଦେବା ସେଇ ତ ହେଲା ଅର୍ଡ଼ର । ନିଜ ଉପରେ ଯେତେବେଳେ ସବୁ ଦାୟିତ୍ୱ ତାକୁ ତ ପୁଣି ତୁଲାଇବାକୁ ହେବ ! କେହି ନ ଦେଖିଲେ ଉପରେ ତ ଜଣେ ଦେଖୁଛି ! ଯାହା କରିଯାଇଥିବା ଆମର ପୁଅନାତି ଭୋଗ କରିବେ ।"

× × ×

ସନ୍ଧ୍ୟାବେଳେ ଅଫିସରଙ୍କ ଘରକୁ ଗଲି । ଲନ୍‌ରେ ଇଜି ଚେୟାରରେ ପଡ଼ି ଭଦ୍ରଲୋକ ଆରାମ କରୁଥିଲେ । ଦିବ୍ୟ ଗପ, ପ୍ରଚୁର ସିଗ୍ରେଟ ମିଳିଲା ଓ ତତ୍‌ସଙ୍ଗେ ଶୁଣିବାକୁ ମିଳିଲା ଶାସନସଂକ୍ରାନ୍ତ କେତେକ ମୂଳ ତତ୍ତ୍ୱ । ନାନା ଉଦାହରଣ ଦେଇ ବୁଝାଇବାକୁ ବସିଲେ ଶାସନଯନ୍ତ୍ରର କାର୍ଯ୍ୟପ୍ରଣାଳୀ । ଏଇ ବିରାଟ ଯନ୍ତ୍ରର ଗୋଟିଏ ସାମାନ୍ୟ ଅଂଶ ଭାବରେ ସେ କଣ କରୁଛନ୍ତି ତାହା ସୂଚାଇବାକୁ ଯାଇ ସେ କହିଲେ

"ବ୍ରେକିଙ୍ଗ୍ ପଏଣ୍ଟ ବୋଇଲେ ଯାହା ବୁଝାଯାଏ ମୋର ଆସି ସେଇ ଅବସ୍ଥା ହେଲାଣି । ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଗୋଟିଏ ଲୋକ ଉପରେ ଯଦି ତଳୁ ଉପରୁ—ଛୋଟ କଥାରୁ ଆରମ୍ଭ କରି ବଡ଼ କଥାଯାଏ ସବୁ ଆସି ପଡ଼ିଲା, ଯଦି ସମସ୍ତେ ତା'ରି ମୁହଁକୁ ଅନାଇଲେ, ସେ ବିଚରା କରେ କଣ ? ଅଫିସ କଥା କହୁଛନ୍ତି ? ହରେ ରାମ୍ ! ଦି ଲେସ୍ ସେଡ୍ ଦି ବେଟର୍ । କିନ୍ତୁ ଅଫିସ ଉପରେ ଅଭିମାନ କରିବସିଲେ ତ ହେବ ନାହିଁ । ଯେତେ ଷ୍ଟ୍ରେନ୍ ପଡୁ ପଛକେ ସବୁଟାକୁ ନିଜ ଉପରକୁ ନେବାକୁ ହେଉଛି । ନ ହେଲେ ତ ଉପାୟ ନାହିଁ । ମାମୁଲି ରୁଟିନ୍ କାମ ଛାଡ଼ିଦେଲେ ମୋ ଲେଭଲ୍‌ରେ ନୋଟିଂ, ଡ୍ରାଫ୍‌ଟିଂ ସବୁ । ଏଥିରୁ ଅନୁମାନ କରିପାରୁଥିବେ । କାହାକୁ କହିବା ? ନିଜ ଦେଶର କାମ ଆମେ ନ କରିବା ତ ଆଉ କିଏ

ଆସି କରିଦେଇଯିବ କହନ୍ତୁ । ଆପଣ ଶୁଣିବେ—ଗତ ୧୨ ବର୍ଷ ଭିତରେ କେଇଟା କେଜୁଏଲ ଲିଭ୍ ଛାଡ଼ିଦେଲେ ଛୁଟି ମୁଁ ଆଦୌ ନେଇନାହିଁ ।”

“କଣ କହିଲେ, ପ୍ରମୋସନ ? ସେସବୁ କଥା ମୁଣ୍ଡକୁ ପଶି-ପାରୁନାହିଁ । ମୁଣ୍ଡ ଖାଲି ହେଲେ ତ ଏ ସବୁ କଥା ପାଇଁ ଜାଗା ରହିବ ! ବୁଝିଲେ, ଏ ଗୋଟାଏ ନିଶା । ଲୋକେ ମଦ ଖାଇ ମାତାଲ ହୁଅନ୍ତି ସତ, ସେ କିନ୍ତୁ କେତେ ଘଣ୍ଟା ପାଇଁ । କିନ୍ତୁ କାମ କରିବାର ନିଶା ବର୍ଷ ବର୍ଷ ଧରି ଛାଡ଼ିବ ନାହିଁ । ଏଇ ମୋର ଯା’ ହୋଇଛି । ସ୍ତ୍ରୀବାଳକ ଗଡ଼ିଯାନ୍ତୁ ତେଣେ—ସଂପତ୍ତିବାଡ଼ି ଉଜୁଡ଼ିଯାଉ ପଛକେ....

ବଡ଼ ସାହେବ ।

କଥାପ୍ରସଙ୍ଗରେ ପଚାରିଲି, ଶାସନରେ ଏଇ ଯେ ସଙ୍କଟ ଦେଖା-ଦେଇଛି ଓ ଚାରିଆଡ଼େ ଶାସନ ସମ୍ବନ୍ଧରେ ଯେଉଁ ଅସନ୍ତୋଷ ପ୍ରକାଶ ପାଉଛି ସେ ବିଷୟରେ ତାଙ୍କର ମତାମତ ।

ସାହେବ କିଛିକାଳ ପାଇଁ ଚିନ୍ତାମଗ୍ନ ହେଲେ । ଶୀତଳ କଫିରୁ ଢୋକେ ପିଇ ଚୁରୁଟ୍ ଲଗାଇ ଧୀର ସଂଯତ କଣ୍ଠରେ ବିଷୟଟିକୁ ନାନା ଦିଗରୁ ବିଶ୍ଳେଷଣ କରି ବୁଝାଇଲେ । ଘୋର ଅବହେଳା ଓ ବିଶୃଙ୍ଖଳା ଫଳରେ ଶାସନକଳ କିପରି ବିକଳ ହୋଇପଡ଼ୁଛି ଓ ତାହା ସଜାଡ଼ିବାକୁ ଯାଇ ସେ କିପରି ପ୍ରାଣ ଦେଇ ଲାଗିପଡ଼ିଛନ୍ତି, ତାର ଚିତ୍ର ସେ ମୋ ଆଗରେ ଥୋଇଲେ । ସବୁ ଠିକ ହୋଇଯାନ୍ତା ଯଦି ସମସ୍ତଙ୍କଠାରୁ ପୂର୍ଣ୍ଣ ସହଯୋଗ ମିଳନ୍ତା । ସେ ଚାହାନ୍ତି ମୌଳିକ ଚିନ୍ତା, ‘ଇମାଜିନେସନ’ । ସମସ୍ୟା-ଗୁଡ଼ିକର ସମାଧାନ ଦିଗରେ ସମସ୍ତେ ଯଦି ମନପ୍ରାଣ ଦେଇ ଲାଗିପଡ଼ନ୍ତେ ତା’ ହେଲେ କିଛି ଚିନ୍ତା କରିବାର ନ ଥିଲା । ଯାହାଙ୍କୁ ଯାହା କରିବାକୁ ଦିଆଗଲା ସେ ତା’ର ପୂର୍ଣ୍ଣ ଦାୟିତ୍ୱ ନେବା ଦରକାର । କିନ୍ତୁ ତା ପରିବର୍ତ୍ତରେ ତାଙ୍କୁ ଯେ ପରିସ୍ଥିତିରେ କାମ କରିବାକୁ ପଡ଼ୁଛି,... ମାଇଁ ଗଡ୍ ....ସ୍ୱୟଂ

ଯୀଶସ୍ ଆସି ମେନେଜ୍ କରନ୍ତୁ ତ ! ତଳ ଫାଙ୍କ, ଉପର ଫାଙ୍କ । ହୋଲ ସୋ'ଟାକୁ ତ ତାଙ୍କୁ ଚଳାଇବାକୁ ହେଉଛି—ଗାଇବାଠାରୁ ବଜାଇବା ପର୍ଯ୍ୟନ୍ତ । ଇମାଜିନ୍ କରିପାରୁଥିବେ କି ଭୀଷଣ ଷ୍ଟ୍ରେନ ନେବାକୁ ହେଉଛି । ସେ କାହାରିକୁ ଏସବୁ କହନ୍ତି ନାହିଁ । ମୁଁ ଇନ୍‌ସିଷ୍ଟ କରିବାରୁ....ଇତ୍ୟାଦି ।

ମୁଣ୍ଡ ଜାମ୍ ହୋଇଯାଇଥିଲା ।

ଘରକୁ ଫେରି ରେଡ଼ିଓ ଖୋଲିଲି ଟିକିଏ ସଙ୍ଗୀତ ଶୁଣିବାପାଇଁ । ଯେଉଁ ଷ୍ଟେସନ ଧରିଲାବେଳକୁ ସବୁଠି ଏକ କଣ୍ଠ, ଅନର୍ଗଳ କହିଚାଲିଛି—

"ଦେଶ ଆଗରେ ଏଇ ଯେ ସଙ୍କଟ ଦେଖାଦେଇଛି ତା'ର କାରଣ ଅନୁସନ୍ଧାନ କରିବାକୁ ଗଲେ ଆପଣମାନଙ୍କୁ ବିଗତ ଦୁଇଶହ ବର୍ଷର ଇଂରଜ ରାଜତ୍ୱର ଇତିହାସ ଆଲୋଚନା କରିବାକୁ ହେବ । ଆମର ଶାସକଗୋଷ୍ଠୀ ମଧ୍ୟରେ ଯେଉଁସବୁ ଅଭାବ ଦେଖାଯାଉଛି—ଚିନ୍ତାର ଅଭାବ, ଆତ୍ମପ୍ରତ୍ୟୟର ଅଭାବ, କୌଣସି ବିଷୟରେ ଗୋଟିଏ ଯୁକ୍ତିସିଦ୍ଧ ନିଷ୍ପତ୍ତିକୁ ଏଡ଼େଇଯିବା ବା ଗୋଳେଇଦେବାର ମନୋବୃତ୍ତି—ଏ ସବୁର ପଛଆଡ଼େ ରହିଛି ଆମର ଦୀର୍ଘ ପରାଧୀନତାର ପରଂପରା ଓ ପ୍ରଭାବ । ତାକୁ ସହଜରେ ଭାଙ୍ଗିହେବ ନାହିଁ । ତାହା ବହୁ ସମୟସାପେକ୍ଷ । ତେଣୁ ମୁଁ କହେଁ, ଯେକୌଣସି ଜଣକ ଉପରେ ସବୁ ନିର୍ଭର ଛାଡ଼ିଦେଇ କେବଳ ତାଙ୍କର ନିର୍ଦ୍ଦେଶ ମାନି କାମ କରିଯାଆନ୍ତୁ । ଲକ୍ଷ୍ୟ ସ୍ଥାନରେ ପହଞ୍ଚିବାର ସେଇଟା ହିଁ ଉତ୍କୃଷ୍ଟ ପନ୍ଥା ।"

"ଗୋଟିଏ ଛୋଟ ଉଦାହରଣ ଦେଇ ବୁଝାଇଦିଏଁ । ନଦୀରେ ନୌକା ଚାଲିଛି । ମାଝିମାନେ ଆହୁଲା ଭିଡ଼ି ଭିଡ଼ି ଘର୍ମାକ୍ତ । ମଙ୍ଗ ଉପରେ ନୀରବରେ ସୁକାନି ଧରି ବସିଛି ଯେଉଁ ବୁଢ଼ା ସେଇ ହେଉଛି ଅସଲ ଲୋକ । କଥା ନାହିଁ, ବାର୍ତ୍ତା ନାହିଁ—ନଦୀର ସ୍ରୋତ ଉପରେ ତାହାର ତୀକ୍ଷ୍ଣ ଦୃଷ୍ଟି ନିବଦ୍ଧ । ମଝିରେ ମୁଣ୍ଡ ଟେକି ଆକାଶର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଆଖି ବୁଲାଇଆଣୁଛି । କେଉଁଠି ଖଣ୍ଡେ କଳା ବଉଦ ଉଠିଲା କି ?

ପବନର ଗତି କେଉଁଆଡ଼େ ? ଲକ୍ଷ୍ୟସ୍ଥାନରେ ନୌକା ଲଗାଇବାର ଦାୟିତ୍ୱ ତାର ଏକାକୀ । ସେ ସେଥିପାଇଁ ପୂର୍ଣ୍ଣ ସଚେତନ ଓ ଜାଗ୍ରତ । ମଙ୍ଗ ଉପରୁ ପାଟି କରି ସେ ଯେଉଁ ନିର୍ଦ୍ଦେଶ ଦେଉଛି ତତ୍କ୍ଷଣାତ୍ ତଦନୁଯାୟୀ କାମ ହେଉଛି । ପ୍ରଶ୍ନ ନାହିଁ—ଯୁକ୍ତି ନାହିଁ ।"

"ମୋତେ ଆପଣମାନେ ସେଇ ବୁଢ଼ା ମାଝିର ସ୍ଥାନ ଦେଇଛନ୍ତି । ମୁଁ ସେ ଦାୟିତ୍ୱ ଆନନ୍ଦରେ ଗ୍ରହଣ କରିଛି ।"

ଘନଘନ କରତାଳି । ବକ୍ତୃତା ଚାଲିଛି ।

× × ×

ମୋର ସବୁ ଗୋଳମାଳ ହୋଇଯାଉଛି । ପ୍ରତ୍ୟେକ ସ୍ତରରେ ପ୍ରତ୍ୟେକ ବ୍ୟକ୍ତି ଯଦି ତାର ସର୍ବଶ୍ରେଷ୍ଠ ଚିନ୍ତା, ଶକ୍ତି ଓ ଚେଷ୍ଟା ବିନିଯୋଗ କଲା ତାହାହେଲେ ସେ ସମସ୍ତ ସମ୍ମିଶ୍ରଣର ଫଳ ତ ନିଶ୍ଚୟ....

ମୋର ପାଞ୍ଚବର୍ଷର ପୁଅ ଆସି ପଚାରିଲା, "ବାପା, ବାପା, ଦୁଇରେ ଦୁଇ ମିଶାଇଲାବେଳକୁ ତ ଚାରି ହେଉ ନାହିଁ

ଅଳ୍ପ ହସି ଉତ୍ତର ଦେଲି—

"ହେଉନାହିଁ ଟି ? ହେବ ବି ନାହିଁ ।"

•

# ମିଥ୍ୟାର ସତ୍ୟ

ଗପଟା ଯେମିତି ଶୁଣିଥିଲି ସେମିତି ଲେଖୁଛି । ଏହାର ସତ୍ୟାସତ୍ୟ ବିଷୟରେ ଯେମିତି କୌଣସି ଗେରେଣ୍ଟି ଦେଇପାରିବି ନାହିଁ; ମୋ ପକ୍ଷରୁ ଯୋଡ଼ାଯୋଡ଼ି କରିବାର ବି କିଛି ଚେଷ୍ଟା କରିନାହିଁ । ମୂଳ କଥାଟା ଆମର ସାଧାରଣ ବିଘ୍ନର ବା ଯୁକ୍ତି ସହିତ ଖାପ ଖାଇଲା ନାହିଁ ବୋଲି ତାକୁ ନାନା ଆବରଣ ଦେଇ ଢାଙ୍କିପକାଇ ବା ରଙ୍ଗ ଲଗାଇ ଚମକଦାର ବା ରହସ୍ୟମୟ କରିବା ମୋର ରୁଚିବିରୁଦ୍ଧ । ଭବ ଓ ଭଷାର ଫୁଲଝରି ସୃଷ୍ଟି କରି କଥାଟା ଗୋଳାଇଦେଲେ ଚଳିବ ନାହିଁ ।

•

ଗପଟା ବନ୍ଧୁ ଶ୍ରୀକାନ୍ତଙ୍କଠାରୁ ଶୁଣିଥିଲି । ଗପ ନୁହେଁ—ତାଙ୍କ ଜୀବନର ଏକ ବିଚିତ୍ର ଘଟଣା । ଅନେକ ଦିନ ତଳର କଥା । ଶ୍ରୀକାନ୍ତଙ୍କର ସେତେବେଳେ ନୂଆ ଚାକିରି । ମଫସଲ ଇଲାକାରେ ଏସିଷ୍ଟେଣ୍ଟ କଲେକ୍ଟର । ସୁଶ୍ରୀ, ସ୍ୱାସ୍ଥ୍ୟବାନ, ଉଚ୍ଚଶିକ୍ଷିତ ତରୁଣ ଅଫିସର । ସିଲ୍କ ସାର୍ଟ, ନାଲି

ଟା'ଇ, ବେକ ବ୍ରସ୍‌କରା କଳା ଚକ୍ ଚକ୍ ବାଳ । ଗୋରା ଚଉଡ଼ା କପାଳରେ ବୁଦ୍ଧି ଓ ଦୀପ୍ତି ଝଲମଲ କରୁଛି । ଆଳସ୍ୟ ନାହିଁ । ବିଶ୍ରାମ ନାହିଁ । କର୍ମତତ୍ପର, ଚଞ୍ଚଳ, ସୁନ୍ଦର ଏଇ ଅଫିସରଟି ସମସ୍ତିଙ୍କର ପ୍ରିୟ, ସମସ୍ତିଙ୍କର ବିଶ୍ୱାସଭଜନ ।

ଦିନକର ଘଟଣା । ମକଦ୍ଦମା ଶୁଣାଣି ଚାଲିଛି । ଜମିସଂକ୍ରାନ୍ତ ବିବାଦ । ସାକ୍ଷୀମାନଙ୍କର ଜମାନବନ୍ଦି ଚାଲିଛି । ସାକ୍ଷୀ ପରେ ସାକ୍ଷୀ ଆସି କାଠ-ଗଡ଼ାରେ ଠିଆ ହେଉଛନ୍ତି; ଶପଥ ନେଉଛନ୍ତି; ନାମ, ଧାମ, ଠିକଣା କହୁଛନ୍ତି; ମକଦ୍ଦମା ସଂପର୍କରେ ଯାହା ଜାଣିଛନ୍ତି ସେସବୁ କହୁଛନ୍ତି । ମାଜିଷ୍ଟ୍ରେଟ୍‌ଙ୍କ ହାତ ବନ୍ଦ ନାହିଁ । କ୍ଷିପ୍ର ଗତିରେ କଲମ ଚାଲିଛି । ମୁହଁ ଟେକିବାକୁ ଫୁରସତ ନାହିଁ । ଜଣେ ସାକ୍ଷୀର ଜମାନବନ୍ଦି ସରିଗଲେ କାଗଜଟା ପେସ୍କାରଆଡ଼କୁ ଫୋପାଡ଼ିଦେଇ ଅନୁଚ୍ଚରେ କହୁଛନ୍ତି—ନେକ୍‌ସଟ ଉଇଟ୍-ନେସ୍—

"ମୋ ନାଁ ଉର୍ମିଳା"....

ମାଜିଷ୍ଟ୍ରେଟଙ୍କ କଲମ କ୍ଷଣକ ପାଇଁ ଅଟକିଗଲା । ଅଦ୍ଭୁତ ଏକ କଣ୍ଠସ୍ୱର, ବଂଶୀସ୍ୱନ ପରି ମଧୁର ଓ କରୁଣ । ସାକ୍ଷୀଗଡ଼ାରେ ଏକ ଉଜ୍ଜ୍ୱଳକାନ୍ତି, ଲାବଣ୍ୟମୟୀ ତରୁଣୀ । ଗାଢ଼ କଳା ବାଳ ଫିଟି ପିଠିଉପରେ ବିଛାଇହୋଇ ପଡ଼ିଛି । ଅଙ୍ଗପ୍ରତ୍ୟଙ୍ଗରେ ଏକ ଅପୂର୍ବ ସୁଷମା । ଲମ୍ବା ଟଣା ଆଖିତଳେ ଏକ ବେଦନାର ଛାଇ । ମୁହଁ ପୋତି ଲେଖିଚାଲିଛନ୍ତି ମାଜିଷ୍ଟ୍ରେଟ; କିନ୍ତୁ ମନତଳେ ଏକ ଅଭୂତପୂର୍ବ ଶିହରଣ—ସର୍ବାଙ୍ଗରେ ଏକ ପଲକ ରୋମାଞ୍ଚ ।

ଜମାନବନ୍ଦି ସରିଗଲା । ତରୁଣୀଟି କାଠଗଡ଼ାରୁ ଓହ୍ଲାଇ ପେସ୍କାରଙ୍କ ଟେବୁଲ୍ ନିକଟକୁ ଗଲା । ଆଖି ଟେକି ନ ଚାହିଁଲେ ବି ଶ୍ରୀକାନ୍ତଙ୍କର ମୁଗ୍ଧ ଚେତନା ସେ ତରୁଣୀଟିର ପ୍ରତ୍ୟେକ ଗତିବିଧି ଅନୁସରଣ କରି ଚାଲିଲା ।

ମକଦ୍ଦମାର ତାରିଖ ପଡ଼ିଲା ପର ମାସକୁ ! ଅନେକ କାମ ଭିତରେ—କ୍ଲବ, ସିନେମା, ବନ୍ଧୁବାନ୍ଧବ, ବହିପଢ଼ା—ସବୁ କଥାଭିତରେ ମନେପଡ଼େ

ସେହି ତାରିଖଟି । ଅଜାଣତରେ ଦିନବାର ଗଣିହୋଇଯାଏ । ଆଉ କେତେଦିନ ବାକି ରହିଲା ସେହି ତାରିଖଟି ?

ସେଇ ତାରିଖ ଆସେ; ଊର୍ମିଳା ସାକ୍ଷୀଗଡ଼ାରେ ଆସି ଠିଆ ହୁଏ । ମୁଗ୍ଧ ଦୃଷ୍ଟିରେ ଶ୍ରୀକାନ୍ତ ଚାହିଁରୁହନ୍ତି । ଓକିଲର ପ୍ରଶ୍ନର ଉତ୍ତର ଦେବାକୁ ଯାଇ କେତେବେଳେ ତରୁଣୀର ମସୃଣ କପାଳରେ ଚିନ୍ତାର ରେଖା ପଡ଼େ । କେତେବେଳେ ଅଧା ଦାନ୍ତରେ ଓଠ କାମୁଡ଼ି ସ୍ଥିର କରେ ପ୍ରଶ୍ନର ଯଥାର୍ଥ ଉତ୍ତର ।

ପୁଣ ତାରିଖ ହୁଏ । ତାରିଖ ପରେ ତାରିଖ । ମକଦ୍ଦମା ଗଡ଼ିଚାଲେ । ମକଦ୍ଦମାକୁ ଛିଡ଼ାଇଦେବାକୁ କୌଣସିମତେ ମନ ମାନେ ନାହିଁ । ତାରିଖ-ମାନଙ୍କରେ ଜବାବସୁଆଲ ହୋଇପାରେ ନାହିଁ । ସମୟ ନାହିଁ । ସାରଦିନ କୋର୍ଟ ଘରର ଏକ କୋଣରେ ବସିରହିଥାନ୍ତି ଊର୍ମିଳା ଓ ତା'ର ବୁଢ଼ାବାପ । ବାରମ୍ବାର ଦୃଷ୍ଟି ଘୂରିଯାଏ ସେହି ନିର୍ଦ୍ଦିଷ୍ଟ କୋଣଟିକୁ—ଊର୍ମିଳାର ଆଖି ଯୋଡ଼ିକ ଯେପରି ଅପଲକ ଦୃଷ୍ଟିରେ ଚାହିଁରହିଛି ଶ୍ରୀକାନ୍ତଙ୍କ ଆଡ଼କୁ । ଆଖିରେ ଆଖି ପଡ଼ିଲାକ୍ଷଣି ଊର୍ମିଳା ଆଖି ଫେରାଇନିଏ ।

ଶେଷରେ ସ୍ଥିର ହେଲା—ସରଜମିନ ତଦନ୍ତ । ନିର୍ଦ୍ଦିଷ୍ଟ ତାରିଖରେ ଶ୍ରୀକାନ୍ତ ଗଲେ ସେ ଗାଁକୁ । ନଈକୂଳିଆ ଏକ ସୁନ୍ଦର ଗାଁ । ଉଭୟ ପକ୍ଷ ଓକିଲଙ୍କ ସଙ୍ଗେ ଘୂରିବୁଲି ଦେଖିଲେ ମକଦ୍ଦମା ସଂକ୍ରାନ୍ତ ଜମି, ଘରବାଡ଼ି । ତଦନ୍ତ ସମାପ୍ତ ହେଲା । ଓକିଲମାନେ ଫେରିଗଲେ । ଶ୍ରୀକାନ୍ତ ରହିଗଲେ ଡାକବଙ୍ଗଳାରେ; ରାତିଟା କଟାଇ ତା' ଆରଦିନ ଫେରିବେ ।

ସନ୍ଧ୍ୟା ହୋଇଆସୁଛି । ଡାକବଙ୍ଗଳା ହତାରେ ଇଜି ଚେୟାରରେ ବସିଛନ୍ତି ଶ୍ରୀକାନ୍ତ ଏକାକୀ । ମାସଟା ବୋଧହୁଏ ଫାଲଗୁନ କି ଚୈତ୍ର । ଝିରି ଝିରି ପବନ ବୋହୁଛି ନଈଆଡୁ । ପୂର୍ବ ଆକାଶର ପ୍ରାନ୍ତରେ ଚନ୍ଦ୍ର କ୍ରମେ ଉଜ୍ଜ୍ୱଳ ହୋଇଆସୁଛି । ଶ୍ରୀକାନ୍ତଙ୍କ ଦୃଷ୍ଟି ଅଜାଣତରେ ଘୂରିଗଲା ଦୂର

ଫାଟକ ଆଡ଼କୁ । ସେଠି ବଉଳଗଛତଳେ କିଏ ଯେପରି ସ୍ଥିର ହୋଇ ଠିଆ ହୋଇଛି; ଅସ୍ପଷ୍ଟ । ଶ୍ରୀକାନ୍ତ ନିରୀକ୍ଷଣ କରି ଚ୍ୱହିଁଲେ ଓ ଚମକି-ଉଠିଲେ । ଏ ଯେ ଉର୍ମିଳା । ମନଟା ଉଲ୍ଲସିତ ହୋଇଉଠିବା ସଙ୍ଗେ ସଙ୍ଗେ ଏକ ସନ୍ଦେହ ଉଙ୍କିମାରିଲା । ସାଗଦିନର ତଦନ୍ତ ପରେ ପୁଣି ଉର୍ମିଳା କାହିଁକି ଆସିଛି ଏଇ ନିର୍ଜନ ଡାକବଙ୍ଗଳାକୁ ଏଇ ଘନ ସନ୍ଧ୍ୟାରେ ଏକାକୀ ?

ଶ୍ରୀକାନ୍ତ ଉଠିଗଲେ ସେଇ ବଉଳଗଛ ପାଖକୁ । ମୁହଁଟା ତଳକୁ କରି ଚୁପ୍ ହୋଇ ଛିଡ଼ା ହୋଇଛି ଉର୍ମିଳା । ଥରେ ଆଖି ଟେକି ଶ୍ରୀକାନ୍ତଙ୍କ ଆଡ଼େ ଚ୍ୱହିଁଲା । କ୍ଷଣକପାଇଁ ହେଲେ ବି ପଲକହୀନ ସେ ଦୃଷ୍ଟି—ଶ୍ରୀକାନ୍ତଙ୍କ ମର୍ମମୂଳ ପର୍ଯ୍ୟନ୍ତ ସେ ଦୃଷ୍ଟି ସ୍ପର୍ଶ କରିଆସିଲା ଯେପରି । ତା'ପରେ ଗାଢ଼ କଣ୍ଠରେ ସେ କହିଲା, "ଆପୋଷରେ ମିଳାମିଶା କରିନେଲୁଁ । ସେଇ କଥା କହିବାକୁ ଆସିଥିଲି ।" ଏତକ କହି ଶ୍ରୀକାନ୍ତଙ୍କ ଗୋଡ଼ତଳେ ମୁଣ୍ଡ ଲଗାଇ ଜୁହାର ହେଲା । ତା'ପରେ ସେ ଉଠି ଠିଆ ହେଲା । ଅବନତ ମୁଖ । ଶ୍ରୀକାନ୍ତ ନିର୍ବାକ୍ ବିସ୍ମୟରେ ଚ୍ୱହିଁରହିଛନ୍ତି । ସନ୍ଧ୍ୟାର ଅନ୍ଧକାର ମଧ୍ୟରେ ଉର୍ମିଳା କ୍ରମେ ଅଦୃଶ୍ୟ ହୋଇଗଲା ।

ତା'ପରେ ଅନେକ କାଳ ଅତୀତ ହୋଇଯାଇଛି । ଶ୍ରୀକାନ୍ତ ଚ୍ୱକିରିର ସିଡ଼ିରେ ବହୁ ପାହାଚ ଅତିକ୍ରମ କରି ଆସିଛନ୍ତି; ବହୁସ୍ଥାନ ବୁଲିଛନ୍ତି । ଅନେକ ଘଟଣା, ବିବିଧ ଅନୁଭୂତି—ସ୍ତ୍ରୀ, ପୁତ୍ର, ସଂସାର—ଏ ସବୁ ଭିତରେ ଅନେକ ବର୍ଷ ତଳର ସେଇ ସାମାନ୍ୟ ଘଟଣାଟି ମନରୁ ସଂପୂର୍ଣ୍ଣ ଲିଭିଯାଇନାହିଁ । ସ୍ମୃତି ଆକାଶରେ କ୍ଷୀଣପ୍ରଭ ଏକ ଛୋଟ ତାରା ପରି ତା' ଯେପରି ରହିଯାଇଛି । ଅବସର ମୁହୂର୍ତ୍ତରେ କେବେ କେବେ ଭସିଉଠେ ସେହି ଚିତ୍ର । ଭରି ଭଲ ଲାଗେ ଫେରଇ ଫେରଇ ମନେ ପକାଇବାକୁ ସେହି କଥା—ଡାକବଙ୍ଗଳାର ସେହି ସନ୍ଧ୍ୟା—ପାଦତଳେ ଲୋଟି ପଡ଼ିଥିବା ସେହି ଆଶ୍ଚର୍ଯ୍ୟ ତରୁଣୀ ।

ସେଦିନ ହଠାତ୍ ସୁରେଶ ସଙ୍ଗେ ଦେଖା । ସୁରେଶ ଶ୍ରୀକାନ୍ତଙ୍କ କଲେଜସାଥୀ; ଆଇ. ଏ. କ୍ଲାସରେ ସାଙ୍ଗରେ ପଢୁଥିଲା । ଶ୍ରୀକାନ୍ତ ପାସ କରି ଉପରକୁ ଉପରକୁ ଗଲେ—ସୁରେଶ ସେଇ ସେକେଣ୍ଡ ଇଅରରେ

ଅଟକିଗଲା ଯେ ଶେଷରେ ତା'ର କଲେଜପଢ଼ା ସେଇଠ ଇତି ହେଲା । ମୁଁ ସେତେବେଳେ ଉପର କ୍ଲାସରେ । ସୁରେଶକୁ ମୋର ବେଶ୍ ମନେ ପଡୁଛି । ଗୋଲଗାଲ ସୁନ୍ଦର ଗୋରା ଚେହେରା । ସବୁବେଳେ ପୁରା ହାତ ସିଲ୍କ ସାର୍ଟ । କୁଞ୍ଚପକା ଲମ୍ବା ଧୋତି । ଚଟି ଘୋଷାରି ଘୋଷାରି ଚାଲେ । ଅଳ୍ପ କଥା କୁହେ । ତା'ର ବନ୍ଧୁମାନେ ଏକସମୟରେ ତାକୁ 'ଲଭର' ବୋଲି ଡାକୁଥିବାର ମନେପଡୁଛି । ସେଇ ସୁରେଶ, ଯାହାର ବହି ସହିତ କେବେ ସଂପର୍କ ନ ଥିଲା—ଯେ ପଛ ବେଞ୍ଚରେ ବସି ନୋଟ୍‌ଖାତାରୁ କାଗଜ ଚିରି ପୃଷ୍ଠା ପୃଷ୍ଠା ଧରି ଖାଲି ଚିଠି ଲେଖୁଥାଏ—ଲଭ୍ ଲେଟର—ସେଇ ସୁରେଶ.... ।

ସେଇ ସୁରେଶ ବର୍ତ୍ତମାନ ପୋଲିସ ଇନ୍‌ସ୍‌ପେକ୍‌ଟର । ପରିଧେୟ କଡ଼ା ଇସ୍ତ୍ରୀକରା ଖାକି ପୋଷାକ । କିନ୍ତୁ ସେହି ଗୋଲଗାଲ ଚେହେରା ରହିଛି । ଆଖିରେ ପ୍ରେମିକ ପ୍ରେମିକ ଚାହାଣି । ଅତି ଶୀଘ୍ର ଓ ସହଜରେ ଦୁଇ ବନ୍ଧୁଙ୍କ ମଧ୍ୟରେ ସମସ୍ତ ବ୍ୟବଧାନ ଖସିପଡ଼ିଲା । ଅତୀତ କାଳର କଲେଜ ବନ୍ଧୁ ପରି ଘନ ହୋଇ ବସିଲେ ଦୁଇ ସାଥୀ । ଜଳଖିଆ ଆସିଲା, ଚା, ସିଗ୍ରେଟ । ଅନେକ କଥା—ସେ କଥା ସରୁନାହିଁ । ମଝିରେ ହଠାତ୍ ଅଟକିଯାଇ ସୁରେଶ ଶ୍ରୀକାନ୍ତଙ୍କୁ ଥରେ ଗହୀରେଇ କରି ଚାହିଁଲା ଓ ମୃଦୁ ହସି ପଚାରିଲା—"ଆଛା ଶ୍ରୀକାନ୍ତ, ଉର୍ମିଳାକୁ ତୋର ମନେ ଅଛି ?"

କେଉଁଠି ବଜ୍ରପାତ ହେଲା ଯେପରି । ଶ୍ରୀକାନ୍ତ ହତବାକ୍ । ସୁରେଶ ଶ୍ରୀକାନ୍ତଙ୍କ କାନ୍ଧ ଉପରେ ହାତ ରଖି ହଲାଇଦେଇ କହିଲା, "ଅଭିନୟ କରିବାର ଦରକାର ନାହିଁ, ବନ୍ଧୁ ! ମୁଁ ସବୁ ଜାଣେ.... ସ—ବୁ....ତୋର ତା'ର ସବୁ କଥା । ମୋତେ ଲୁଚାଇ ଲାଭ ନାହିଁ ।"

ଶ୍ରୀକାନ୍ତ ସ୍ତବ୍ଧ ହୋଇ ବସିରହିଛନ୍ତି । କଣ ସବୁ ସୁରେଶ ଜାଣେ ? ଜାଣିଲା ଭଳି କଣ ଯେ ଘଟିଥିଲା ତାଙ୍କର ଓ ଉର୍ମିଳା ଭିତରେ ? ଉର୍ମିଳା ପାଇଁ ଯାହା ବା ସାମାନ୍ୟ ଦୁର୍ବଳତା ତାଙ୍କ ମନରେ ଜାଗିଥିଲା ତାହା ତ ମନର ନିତାନ୍ତ ଗୋପନ କଥା । ଉର୍ମିଳାକୁ ସେ ଜଣାଇନାହାନ୍ତି—କାହାରିକୁ

ତ ଏ ସଂପର୍କରେ ସେ କେବେ କିଛି କହିନାହାନ୍ତି । ତେବେ ସୁରେଶ ଜାଣିଲା କିପରି ଓ କଣ ସେ ଜାଣିଛି ?  କିଏ ସୁରେଶର ସମ୍ବାଦଦାତା ?

ଶ୍ରୀକାନ୍ତ ନାନା ପ୍ରଶ୍ନ, ସଫାଇ ବାର୍ତ୍ତିବାର ସମସ୍ତ ଆନ୍ତରିକତା ସତ୍ତ୍ୱେ ସୁରେଶ ଅଟଳ । ବିଶ୍ୱାସ, ଅବିଶ୍ୱାସର ପ୍ରଶ୍ନ ଉଠୁନାହିଁ । ଖାଣ୍ଟି ସତ କଥା ଯାହା ସେ ଉର୍ମିଳା ମୁହଁରୁ ଶୁଣିଛି ଓ ଯାହା ଶୁଣି ସେ ଉର୍ମିଳା ଭଳି ଦୁର୍ଲଭ ପଦାର୍ଥକୁ ଜାଣି ଜାଣି ମୁକ୍ତି ଦେଇଛି ।

ଶେଷରେ ସେ ସବୁ ଖୋଲି ଶ୍ରୀକାନ୍ତଙ୍କୁ କହିଲା । ଶ୍ରୀକାନ୍ତଙ୍କର ସେଠୁ ବଦଳି ହେବା ପରେ ପରେ ସୁରେଶ ଗଲା ଥାନା ଅଫିସର ହୋଇ । ଉର୍ମିଳାର ଘର ଓ ଜମିବାଡ଼ି ନେଇ ଯେଉଁ ମିଟ୍‌ମାଟ୍ ହୋଇଥିଲା ସେଥିରେ ପୁଣି ଗୋଳମାଳ ଧରିଲା । ସେଇ ସଂକ୍ରାନ୍ତରେ ସୁରେଶ ସେ ଗାଁକୁ ଗଲା ଓ ଉର୍ମିଳାକୁ ଜାଣିଲା । ଉର୍ମିଳାର ରୂପଲାବଣ୍ୟ ତାକୁ ମୁଗ୍ଧ କଲା । ତାକୁ ପାଇବାପାଇଁ ନାନା ଅସ୍ତ୍ର ପ୍ରୟୋଗକଲା । ଉର୍ମିଳାର ଚାରିପଟେ ଏକ ବ୍ୟୂହ ରଚନା କରି ତାକୁ ଧୀରେ ଧୀରେ ପାଖେଇ ଆଣିଲା । ଶେଷରେ ଏକ ଘନ ଅନ୍ଧକାର ରାତ୍ରିରେ ଉର୍ମିଳାକୁ ସେ ଘେନିଆସିଲା ସେଇ ଡାକ-ବଙ୍ଗଳାକୁ । ମାତ୍ର ଟେବୁଲ ଉପରେ ଜଳୁଥିବା ଅସ୍ପଷ୍ଟ କେଣ୍ଡଲ ଆଲୋକରେ ଦେଖିଲା, ଉର୍ମିଳାର ଦୁଇ ଆଖିରୁ ଅଜସ୍ର ଧାରରେ ଅଶ୍ରୁ ଝରିପଡୁଛି । ସାଙ୍ଗେ ସାଙ୍ଗେ ସୁରେଶ ବାହାରକୁ ଚାଲିଆସିଲା !

"ଜାଣିଛୁ ତ ଶ୍ରୀକାନ୍ତ, ମୁଁ ଯେତେ ଦୁର୍ଦ୍ଧର୍ଷ ହେଲେ ବି ମୋର ହୃଦୟ ପ୍ରେମିକର ହୃଦୟ । ସୁନ୍ଦରୀ ନାରୀ ପ୍ରତି ଦୁର୍ବଳତା ମୋର ରକ୍ତଗତ । ବହୁ ନାରୀ ମୋ ଜୀବନରେ ଆସିଛନ୍ତି । ମୁଁ ସେମାନଙ୍କଠାରୁ ଯାହା ପାଇଛି ତା'ଠାରୁ ବେଶୀ ଦେଇଛି । କିନ୍ତୁ ଅଶ୍ରୁମୟୀ ଏଇ ଉର୍ମିଳାକୁ ବଳାତ୍କାର କରି ଅଧିକାର କରିବା ମୋର ରୁଚିବିରୁଦ୍ଧ । ଅସମ୍ଭବ, ତା' ହୋଇପାରେ ନା ।

"ଘରଭିତରକୁ ଫେରିଆସିଲି । ଉର୍ମିଳା ଚେୟାର ହାତ ଉପରେ ମୁଣ୍ଡ ରଖି ଅଧୀର ହୋଇ କାନ୍ଦୁଛି । ମନ ସ୍ଥିର କରିନେଲି—

"ଆଉ ନୁହେଁ ; ଉର୍ମିଳା ଉପାଖ୍ୟାନ ଏଇଠୁ ଶେଷ । ତାକୁ ନେଇ ତା'ଘରେ ପହଞ୍ଚାଇଦେବାକୁ ହେବ । କିନ୍ତୁ ସେଇ ରାତିରେ ତା' ସମ୍ଭବ ନୁହେଁ । ରାତି ଆଉ ବେଶୀ ବାକି ନ ଥିଲା । ବାରଣ୍ଡାରେ ଇଜି ଚେୟାରରେ ଆସି ବସିଲି । ଉର୍ମିଳାକୁ ଅଭୟ ଦେଇ ସ୍ପଷ୍ଟ ବୁଝାଇଦେଲି, ରାତି ପାହିଲେ ତାକୁ ତା' ଘରେ ନେଇ ପହଞ୍ଚାଇଦେଇ ଆସିବି । ଅଦୂରରେ ଅନ୍ଧକାର ବାରଣ୍ଡାର ଏକ କୋଣରେ ସେ ଛିଡ଼ାହୋଇ ରହିଲା । ନଈ ଉପରକୁ ଝୁଲିପଡ଼ିଥିବା ବିସ୍ତୃତ ତାରକାଭରା ମଧ୍ୟରାତ୍ରିର ଆକାଶର ସେ ଏକ ଅପୂର୍ବ ରୂପ । କ୍ରମେ କ୍ରମେ ମୋର ସମସ୍ତ ଉତ୍ତେଜନା, ସମସ୍ତ ଜ୍ୱାଳା ପ୍ରଶମିତ ହୋଇଆସିଲା । ନିଜ ପ୍ରତି ତାଚ୍ଛଲ୍ୟ ଓ ଉର୍ମିଳା ପ୍ରତି ଏକ ଗଭୀର ମମତାରେ ମୋର ମନପ୍ରାଣ ଭରିଉଠିଲା ।"

"ସେଇ ଅଦ୍ଭୁତ ପରିବେଶ ଭିତରେ ଶୁଣିଲି ତା ଜୀବନର ବିଚିତ୍ର କାହାଣୀ । ସେସବୁ କଥା ଆଉଦିନେ ଶୁଣିବୁ । ତୋ'ରି କଥାଟା କୁହେଁ— ତୁ ଯେବେ ତା' ଜୀବନପଥରେ ଦେଖାଦେଲୁ । ପନ୍ଦର ବର୍ଷ ତଳର କଥା । ତଳ କୋର୍ଟରେ ତା'ର ମକଦ୍ଦମା ଚାଲିଥାଏ । କୋର୍ଟ ରୁମରେ ଏକ କୋଣରେ ବସି ଏକଧ୍ୟାନରେ ତୋତେ ଦେଖୁ ଦେଖୁ ଅଜାଣତରେ ତା'ର ମନପ୍ରାଣ ତୋ ପାଖରେ ସେ ହରାଇବସିଲା । କ୍ରମେ କ୍ରମେ ସେ ଅନୁଭବ କଲା, ତୁ ଯେପରି ଏକ ଆକୁଳ ଆଗ୍ରହରେ କୋର୍ଟଘରର ଜନଗହଳି ଭିତରେ କେବଳ ତାକୁଇ ଖୋଜିବୁଲୁଛୁ । ତାରିଖ ପରେ ତାରିଖ ପଡ଼ିଲା । ମକଦ୍ଦମା ଗଡ଼ିଚାଲିଲା । ମନେ ମନେ ସେ ତାହାର ଦେହମନ ତୋ'ରି ପାଖରେ ସମର୍ପଣ କରିବସିଲା । ତୋତେ ସେ ତା'ର ଜୀବନର ଦେବତାରୂପେ ଗ୍ରହଣ କରିନେଲା । ତା' ପରେ ଏଇ ଡାକବଙ୍ଗଳାରେ ଏକ ନିର୍ଜନ ସନ୍ଧ୍ୟା ଆକାଶରେ ଶୁକ୍ଳପକ୍ଷ ଚନ୍ଦ୍ର । ସେ ତୋ ପାଦତଳେ ଲୋଟିପଡ଼ିଲା । ତୁ ତାକୁ ଧରି ଉଠାଇନେଲୁ । ଆଃ, ଚୁପ୍ କର, ବାଧା ଦେ'ନା, ଶୁଣି ଯା ।"

"ଅସମ୍ଭବ ! ଏସବୁ ଟ୍ରେସ୍, ଆବସର୍ଡ, ସୁରେଶ, ବିଶ୍ୱାସ କର । କଣ କହି ତୋତେ ବୁଝାଇବି ? ଓ, ମାଇଁ ଗଡ...." ଶ୍ରୀକାନ୍ତଙ୍କର କଣ୍ଠ ରୁଦ୍ଧ ହୋଇଆସିଲା ।

ସୁରେଶ ଏସବୁ କଥାକୁ କାନ ନ ଦେଇ କହିଗଲିଛି—"ତା ପରେ କେତେ ମଳନ ଘଟି, ଗଭୀର ପ୍ରେମ ନିବେଦନ—ସେଇ ଡାକବଙ୍ଗଳା, ନଦୀଘାଟ, ସହକାର କୁଞ୍ଜ ତା'ର ସାକ୍ଷୀ । ସବୁ ଟ୍ରେସ୍ ? ସବୁ ଆବସର୍ଡ ? ନା, ନା, ବନ୍ଧୁ, ଏକ ଅସହାୟା ନାରୀର ଦେହ, ମନ, ପ୍ରାଣ ଲୁଣ୍ଠନ କରି ପରିବର୍ତ୍ତରେ କିଛି ନ ଦେଲୁ ନାହିଁ, ସାମାନ୍ୟ ସ୍ୱୀକାରୋକ୍ତି କରିବାକୁ ବି ତୁ ପ୍ରସ୍ତୁତ ନାହୁଁ । ତୁ ଗୋଟାଏ ନୃଶଂସ ବ୍ରୁଟ୍ ।"

ସୁରେଶ ଚାଲିଯାଇଛି । ଶ୍ରୀକାନ୍ତ ସ୍ତବ୍ଧ ହୋଇ ବସିରହିଛନ୍ତି । ଯେତେ ଭାବୁଛନ୍ତି ସେତେ ସେ ଏକ ବୁଢ଼ିଆଣୀ ଜାଲରେ ଛନ୍ଦି ହୋଇ ଯାଉଛନ୍ତି । ତାଙ୍କର ସ୍ପଷ୍ଟ ମନେଅଛି ସେ ଉର୍ମିଳାକୁ ସ୍ପର୍ଶ କରିନାହାନ୍ତି । ସେଇ ଯେ ଡାକବଙ୍ଗଳାରେ ବକୁଳଗଛ ତଳେ ସେ ଗୋଡ଼ତଳେ ପ୍ରଣାମ କରି ଉଠି ଚାଲିଯାଇଥିଲା, ସେତିକି ହିଁ କେବଳ ଉଲ୍ଲେଖଯୋଗ୍ୟ ଘଟଣା ।

ତା' ହେଲେ ତାଙ୍କ ମନ ଗହୀରର ସବୁ ଅକୁହା ସମ୍ବାଦ ଉର୍ମିଳା ଚିତ୍ତରେ ପ୍ରତିଧ୍ୱନିତ ହେଲା କିପରି ? କେବଳ ସେତିକି ନୁହେଁ, ତାଙ୍କର ସମସ୍ତ କାମନା, କଳ୍ପନା ଜୀବନ୍ତ ହୋଇ ଉର୍ମିଳାର ଜୀବନର ସତ୍ୟ ରୂପରେ ପ୍ରକାଶ ପାଇଛି । ଦୁଇଟି ଜୀବନକୁ ଯୋଗ କରି ଯେଉଁ ପ୍ରସ୍ତର ସେତୁ ଗଢ଼ିଉଠଛି ତାକୁ ଅସ୍ୱୀକାର କରିବାର କ୍ଷମତା ତାଙ୍କର ନାହିଁ । ନିଜର ଯୁକ୍ତି ଓ ଗାଣିତିକ ଗଣନାରେ ଖାପ୍ ଖାଇଲା ନାହିଁ ବୋଲି ଏତେ ବଡ଼ ସତ୍ୟ କଣ ମିଥ୍ୟା ହୋଇଯିବ ! କେଉଁଟା ସତ୍ୟ କେଉଁଟା ମିଥ୍ୟା, ସବୁ ମିଶି ଯେପରି ଏକାକାର ହୋଇଗଲା ଶ୍ରୀକାନ୍ତଙ୍କ ମନପ୍ରାଣରେ ।

ଶ୍ରୀକାନ୍ତଠାରୁ ଏ ଗପ ଶୁଣୁଶୁଣୁ ମନେ ହେଲା, ଏ ଏକ ଅପୂର୍ବ ପ୍ରହେଳିକା । ପଚାରିଲି—"ଆଚ୍ଛା ଶ୍ରୀକାନ୍ତ, ଉର୍ମିଳା ସଙ୍ଗେ ତୋର ଆଉ ଦେଖା ହୋଇଛି ନା ?"

ଶ୍ରୀକାନ୍ତର ମୁହଁରେ ଆଖିରେ କିପରି ଏକ ବେଦନା ଫୁଟିଉଠିଲା । କିଛି ସମୟ ରହି ଧୀର ଓ ଅସ୍ପଷ୍ଟ କଣ୍ଠରେ ସେ କହିଲା, "ନା, କାରଣ ଉର୍ମିଳା ଆଉ ନାହିଁ । ସେକଥା ସୁରେଶ ଫେରିଯାଇ ସନ୍ଧାନ ନେଇ ଜଣାଇଥିଲା ।"

## ଭସ୍ମସାଥୀ

ଅପ୍ ପରୀ ଏକସ୍‌ପ୍ରେସ୍ ଆମ ଷ୍ଟେସନରେ ମୋଟେ ପାଞ୍ଚ ମିନିଟ ରୁହେ । ଗାଡ଼ି ଭରି ଭିଡ଼, ବୁକିଂ ବନ୍ଦ । ସେଇ ଗାଡ଼ିରେ ଗାନ୍ଧିଜୀଙ୍କର ଭସ୍ମ ଯାଉଛି ମହୋଦଧିରେ ବିସର୍ଜନ ଦିଆଯିବାକୁ । କଟକରେ ବିରାଟ ଆୟୋଜନ ଚାଲିଛି—ଶୋଭାଯାତ୍ରା, ସଭା, ଆଉରି କେତେ କଣ । ପ୍ରଲୋଭନ ସମ୍ଭାଳି ନ ପାରି ମଫସଲ ଗାଁରୁ ପୁଟୁଳିପତ୍ର ବାନ୍ଧି ଦୌଡ଼ିଛି ଗାଡ଼ି ଧରି ଅନ୍ତତଃ କଟକ ପର୍ଯ୍ୟନ୍ତ ଚାଲିଯିବାକୁ । ଏଇ ଏକ୍‌ସ୍‌ପ୍ରେସ୍‌ରେ ଯାଇପାରିଲେ ମହାଭାଗ୍ୟର କଥା—ଏଥିରେ ଗାନ୍ଧିଜୀଙ୍କର ଦେହାବଶେଷ ଯାଉଛି । ସାହେବର ହାତଓଠ ଧରି ନେହୁରା ହେଲି । ମୁଣ୍ଡରେ ଟୋପି, ଅଣ୍ଟାରେ ଖାକି ହାଫ୍‌ପେଣ୍ଟ ଓ ମୁହଁରେ ଖଣ୍ଡିଇଂରଜି ଶୁଣି ସାହେବଙ୍କର ଯାହାହେଉ ଦୟା ହେଲା; ହାତରେ ଧରିଥିବା ଆଲୁଅଟାକୁ ଗୋଟାଏ ସେକେଣ୍ଡ କ୍ଲାସ ଡବା ଉପରକୁ ଦେଖେଇଦେଇ ଆଜ୍ଞା କଲେ, "ଗେଟ ଇନ୍ !"

ଦୁଆର ଠେଲି ଭିତରକୁ ଆସିଲି । ଗାଡ଼ି ଛାଡ଼ିଦେଲା । ଛୋଟ କମ୍ପାର୍ଟମେଣ୍ଟ । ତଳେ ତିନିଗୋଟି ଓ ଉପରେ ଦୁଇଟା—ମୋଟ ପାଞ୍ଚଟି ବାର୍ଥ । ଚାରିଟି ବାର୍ଥରେ ଜଣେ ଜଣେ ଆଖି ବୁଜି ପଡ଼ିଛନ୍ତି ଓ ପଞ୍ଚମଟିରେ ଗୋଟିଏ ତେଲିଙ୍ଗ ପରିବାର—ପୁରୁଷ, ସ୍ତ୍ରୀ, ବୁଢ଼ୀ ମା । ପୁରୁଷ ସୁସୁପ୍ତ, ବୃଦ୍ଧା ଅର୍ଦ୍ଧଜାଗ୍ରତ, ଯୁବତୀ ସ୍ତ୍ରୀଟି ସ୍ତବ୍ଧ ହୋଇ ବାହାରକୁ ଚାହିଁରହିଛି । ସମସ୍ତ କମ୍ପାର୍ଟମେଣ୍ଟଟି ନୀରବ, ନିସ୍ତବ୍ଧ । ଟିକିଏ କେଉଁଠି ଲାଗିଯିବା ଉଦ୍ଦେଶ୍ୟରେ ଅନ୍ୟ ଚାରିଟି ବାର୍ଥ ଆଡ଼େ ଆଖି ଘୂରାଇ ଦେଖିଲି ଓ ନିରାଶ ହୋଇ ମୋର ଛୋଟ ବେଡିଂ ଉପରେ ଟିଣ ସୁଟ୍‌କେସ୍‌ଟି ଜମାଇଦେଇ ତା' ଉପରେ ବସି ଟିକିଏ ତାଜା ହେବା ଉଦ୍ଦେଶ୍ୟରେ ପକେଟରୁ ଖଣ୍ଡେ ସିଗାରେଟ୍ ବାହାର କରି ଲଗାଇଲି ।

ମୋର ସାମନା ବାର୍ଥରେ ଯେଉଁ ଲୋକଟିକୁ ମୁଁ ନିଦ୍ରିତ ବୋଲି ଭାବିଥିଲି ସେ ଯେ ପୂର୍ଣ୍ଣ ଜାଗ୍ରତ ଏହା ତାଙ୍କ ହସ୍ତଧୃତ ଜ୍ୱଳନ୍ତ ସିଗାରେଟରୁ ଅନୁମାନ କରି ମୁହଁ ଆଡେ ଚାହିଁ ଦେଖିଲି ଯେ ତାଙ୍କର ଦୃଷ୍ଟି ଏକ ନିର୍ନିମେଷରେ ସେଇ ତେଲିଙ୍ଗ ଯୁବତୀଟି ଉପରେ ନିବିଷ୍ଟ ହୋଇ ରହିଛି । କୌତୂହଳ ହେଲା ଓ ଲୋକଟିର ରସିକତାର ସୁବିଧା ନେଇ ଟିକିଏ ଜାଗା କରିନେବା ଉଦ୍ଦେଶ୍ୟରେ ଲୋକଟି ପାଖକୁ ଯାଇ ସିଗାରେଟ ପ୍ୟାକେଟଟି ଆଗକୁ ବଢ଼ାଇଦେଲି । ଲୋକଟି ଚମକିଉଠି ବସିପଡ଼ି ସତରଞ୍ଜିଟିକୁ ଗୁଡ଼ାଇନେଇ ମୋତେ ବସିବାକୁ ଇଙ୍ଗିତ କଲେ ଓ ମୋ ପ୍ୟାକେଟରୁ ଖଣ୍ଡେ ସିଗାରେଟ୍ ନେଇ ତାଙ୍କ ନିର୍ବାଣୋନ୍ମୁଖ ସିଗାରେଟ୍‌ରୁ ଧରାଇନେଇ ପ୍ରଫୁଲ୍ଲ ହୋଇ ପଚାରିଲେ, "କେତେ ଦୂର ?"

କହିଲି—"ଏଇ କଟକ ପର୍ଯ୍ୟନ୍ତ । କଟକଠାରୁ ଆପଣ ଆରାମ କରିବେ । ସେଠୁ ଗାଡ଼ି ଫାଙ୍କ ହୋଇଯିବ । ଆପଣ କେତେଦୂର ଯିବେ ?"

ମୁଁ ଏଇଠି ସାଂଘାତିକ ଭୁଲ କଲି । ମୁଁ ଦେଖି ନ ଥିଲି ଯେ ଭଦ୍ରଲୋକଙ୍କ ପରିଧେୟ ଖଦଡ଼; କଟକ ନ ଯାଇ ଏ ଗତିରେ ସେ ଯେ

•

ଆଉ କେଉଁଠାକୁ ଯାଇପାରନ୍ତି ଏପରି ଅନୁମାନ କରିବା ଯେ କେତେ ଗର୍ହିତ ଏଟା ପର ମୁହୂର୍ତ୍ତରେ ତାଙ୍କ କଣ୍ଠରେ ବାଜିଉଠିଲା, "ଓଃ, ଗାନ୍ଧିଜୀଙ୍କ ପ୍ରତି ଭକ୍ତି ଯେ ଆପଣଙ୍କର ଏକଛତ୍ର ଅଧିକାର ଏଟା ଆପଣଙ୍କ ବେଶଭୂଷାରୁ ବେଶ୍ ବୁଝାଯାଉଛି । ହୁଁଃ !"

ଭଦ୍ରଲୋକ ଘୁଞ୍ଚିଗଲେ ଓ ତକିଆରେ ଠେସ ଦେଇ ତେଲିଙ୍ଗା ଯୁବତୀର ମୁଣ୍ଡ ଉପର ଦେଇ ଝରକାବାଟେ ବାହାରର ଅନ୍ଧକାର ନିରୀକ୍ଷଣ କଲେ । ମୁଁ ଅନୁତାପଦଗ୍ଧ ହୋଇ ମୋର ପୂର୍ବସ୍ଥାନକୁ ଏ ପରିସ୍ଥିତିରେ ଫେରିଯିବି କି ନାହିଁ ଚିନ୍ତା କରିବାକୁ ଲାଗିଲି ।

ଗାଡ଼ି ଧୀର ହୋଇଆସିଲା । ଆଗରେ ବୋଧହୁଏ କେଉଁ ଷ୍ଟେସନ । ଉଠିଆସି ମୁହଁ କାଢ଼ି ବାହାରକୁ ଚାହିଁ ଠିଆ ହୋଇ ରହିଲି । ଛୋଟ ଷ୍ଟେସନ—ପ୍ଲାଟ୍‌ଫର୍ମରେ ଭିଡ଼ ! ହୁ ହୁ ହୋଇ ଏକ ମଶାଲ ଜଳୁଛି ଜନତା ଚିତ୍କାର କରିଉଠିଲା—"ଗାନ୍ଧିଜୀକି ଜୟ ।" ନିଃଶବ୍ଦ ଅନ୍ଧରାତ୍ରିରେ ତାହା ଚତୁର୍ଦ୍ଦିଗରେ ପ୍ରତିଧ୍ୱନିତ ହେଲା—"ଗାନ୍ଧିଜୀକି ଜୟ ।" ଫେରିଚାହିଁ ଦେଖେଁ, ନିଦ୍ରିତ ଯାତ୍ରୀମାନଙ୍କର ନିଦ୍ରାଭଙ୍ଗ ହୋଇଛି । ତେଲିଙ୍ଗା ପ୍ରୌଢ଼ ବ୍ୟକ୍ତିଟି ଯୁବତୀଟିକୁ କଣ ବିଡ଼ି ବିଡ଼ି ହୋଇ କହିଲା ଓ ପର ମୁହୂର୍ତ୍ତରେ ମୁହଁ ବୁଲାଇ ଶୋଇଲା । ଅନ୍ୟ ଦୁଇ ବାର୍ଥରେ ଲମ୍ବ ହୋଇ ଯେଉଁ ଦି'ଜଣ ନିଦ୍ରା ଯାଇଥିଲେ ସେମାନେ ଧଡ଼ପଡ଼ ହୋଇ ଉଠି ବସିଲେ । ନିଜ ନିଜ ଭିତରେ କଅଣ ହିସାବ କଲେ—କଟକ ଆଉ କେତେ ଦୂର ରହିଲା, ଏଇପରି । ବିସ୍ତୃତ ବିଛଣା ଉପରେ ଦି'ଗୋଡ଼ ଟେକି ଚେକା ପକାଇ ପକେଟରୁ ଖଣ୍ଡେ ପାନ କାଢ଼ି ପାଟିରେ ପୂରାଇ ଜଣେ ଆରମ୍ଭ କଲେ, "ଦେଖ ତ, ଏ ବର୍ଷାରାତିରେ କେତେ ଦୂରରୁ ଏ ଲୋକଗୁଡ଼ା ଦୌଡ଼ି-ଆସିଛନ୍ତି । ଯାହା କୁହ, ଗାନ୍ଧିବୁଢ଼ା ସଙ୍ଗେ ସଙ୍ଗେ ଏ ଦେଶଟା ରସାତଳକୁ ପଡ଼ିଗଲା; ଆଉ ଉଠିପାରିବ ନାହିଁ—ଓଃ !"

ଏ ଭଦ୍ରଲୋକଙ୍କର ପରିଧେୟ ଧୋତି, ଗଳାବନ୍ଦ କୋଟ୍, ଚାଦର— ହୁଏତ ଜମିଦାରଙ୍କର ତହସିଲଦାର ହୁଅନ୍ତୁ ବା ହାକିମଙ୍କ ପେସ୍କାର ।

ଅନ୍ୟ ଭଦ୍ରଲୋକଟି ମୋରି ପରି ଖାକି ପେଣ୍ଟ, ମିଲ୍ ସାର୍ଟ ପରିହିତ । ଖାଲି ପ୍ରଭେଦ ଭିତରେ ମୋର ବାଦାମୀ ରଙ୍ଗର କେଟ୍‌ସ ଜୋତା, ତାଙ୍କର ପୂରା ଚମଡ଼ା ଜୋତା । ଏଇ ଭଦ୍ରଲୋକଟି ଯେପରି କଥାଟାକୁ ଗିଳିଦେଇ ହଜମ କରିବାକୁ ଲାଗିଲେ । ତାଙ୍କର ଭ୍ରୂ କୁଞ୍ଚିତ ହୋଇଆସିଲା, ମୁଖ ଗମ୍ଭୀର ହେଲା । ଶେଷରେ କହିଲେ, "କିନ୍ତୁ ଆମ ଲୋକଗୁଡ଼ାକ ସେ ମହାପୁରୁଷଙ୍କୁ ଜମା ଚିହ୍ନିଲେ ନାହିଁ; ଖାଲି ତ ଗୋଟାଏ ହୁ'ରେ ମାତିଲେ—'ଗାନ୍ଧିଜୀକି ଜୟ' । କିଛି ବୁଝୁଛନ୍ତି ହେଲେ—କି ପଦାର୍ଥ ଏ ଗାଡ଼ିରେ ଯାଉଛି ! ବାବୁ, ତିନି ବର୍ଷ ହେଲା ମୁଁ ସପ୍ଲାଇ ବିଭାଗରେ କାମ କରି ଏ ଲୋକଗୁଡ଼ାଙ୍କୁ ଜାଣିଛି । କିଛି ବୁଝନ୍ତି ନାହିଁ, କିଛି ଶୁଣନ୍ତି ନାହିଁ । ଏଇ ଧର କଣ୍ଟ୍ରୋଲ ଉଠିବା କଥା—କଥା କେଉଁ ମାର୍ଗରେ ଚାଲିଛି, କେଉଁ ପାଣି କେଉଁଠିକି ଯାଉଛି, ଦେଖ ନା, ମାତିଲେ ତ ! ଆଉ କିଏ କାହାରିକୁ ପଚାରୁଛି ? ଆମକୁ ତ ଆଉ ମଣିଷ ବୋଲି କେହି ଗଣୁନାହାନ୍ତି ।"

"ଠିକ୍ କହିଲେ"—ସେଇ ଖଦଡ଼ପିନ୍ଧା ବାବୁଟି ଘୁରିବସିଲେ—"ଠିକ୍ କହିଛନ୍ତି । ଗାନ୍ଧି ମହାତ୍ମାର କେଉଁ କଥାଟା ମାନିଲେଣି ଭଲା ! ଲାଞ୍ଚମିଛ ଚୋରୀନାରୀ ତ ଘରେ ଘରେ ଲାଗିଛି; କଣ୍ଟ୍ରୋଲ କଥାଟା ମନକୁ ପାଇଯାଇଛି । ଗାନ୍ଧିମହାତ୍ମା କଣ୍ଟ୍ରୋଲ ଉଠାଇବାକୁ କହୁଥିଲା, ସେ ସମ୍ଭାଳିଥାନ୍ତା । ଆଜ୍ଞା, ମୁଁ ଜଣେ ପଡ଼ି କମିଟିର ସେକ୍ରେଟେରୀ । ମୁଁ କହୁଛି, ଏମାନେ ପାରିବେ ? ସମ୍ଭାଳିବେ? ନା, କଣ କହୁଛନ୍ତି, ଆଜ୍ଞା ?" (ସପ୍ଲାଇବାବୁଙ୍କୁ ଉଦ୍ଦେଶ୍ୟ କରି)

ସପ୍ଲାଇବାବୁ ଯେପରି ଭାବିଚିନ୍ତି ଠିକ କରି ରଖିଥିଲେ; ସ୍ପଷ୍ଟ ଉତ୍ତର ଦେଲେ, "ଆପଣ ପାଗଳ ହେଲେ ! ଏଇ, ଦେଖନ୍ତୁ ନା, ପୁଣି କଣ୍ଟ୍ରୋଲ ବସିବ—ଫଡ଼ି କମିଟି ଯେମିତି ଚାଲିଥିଲା, ଚାଲିବ । କଣ, ଥଟ୍ଟା ପଡ଼ିଛି କି ?"

ପେଷ୍କାର ବା ତହସିଲଦାରବାବୁଙ୍କ ପାଖରେ ଟିକେ ଜାଗା କରିନେଇ ବସି ଆପ୍ୟାୟିତ ହେଲା ପରି ପଚାରିଲି, "ଆଜ୍ଞା, ଆପଣ କଣ କରନ୍ତି ?"

ଭଦ୍ରଲୋକ ପ୍ରୀତ ହୋଇ ଉତ୍ତର ଦେଲେ, "ମୁଁ ଏଇ ସାମାନ୍ୟ ପେସ୍କାର ଖଣ୍ଡେ—ଏସ୍.ଡି.ଓ.ଙ୍କ କୋର୍ଟରେ ।"

ମୁଁ ଦି'ହାତ ଯୋଡ଼ି ନମସ୍କାର କରିବାରୁ ଭଦ୍ରଲୋକ କହିଲେ, "ସେ ବେଳ ଆଉ ନାହିଁ, ଆଜ୍ଞା ! ବେଳ ଥିଲା, ଏଇ ପେସ୍କାର ଚାକିରି କରି ଚାରି ବଖରା ପକ୍କା ଘର ତୋଳିଲି—ପିଲାକୁ ବି.ଏ. ପର୍ଯ୍ୟନ୍ତ ପଢ଼ାଇଲି । ବର୍ତ୍ତମାନ ତ ଦି' ବେଳା ଦାନା ଜୁଟିଲା ନାହିଁ । କି ଘୋର ସମୟ ପଡ଼ିଗଲା ! ସାହେବକୁ ଧରାଧରି କରି ଜନ୍ମାକୁ (ପୁଅ) ମୋ ଜାଗାରେ ରଖିଦେଇ ଛୁଟି ନେବି ଭାବୁଥିଲି, କିନ୍ତୁ ନା, ଆଉ ନୁହେ । ତାକୁ ପରିଷ୍କାର କହିଦେଲିଣି— ବାବୁ, ଏଠି ଆଉ କିଛି ନାହିଁ; ହାକିମ ତ ଗଡ଼ଗଡ଼େଇ ଯାଉଛନ୍ତି !"

ସପ୍ଲାଇବାବୁଙ୍କ କାନରେ ଆମ କଥା ପଡ଼ିଗଲା ବୋଧହୁଏ । ସେ ଆମ ଆଡ଼କୁ ମୁହଁ ଫେରାଇ ହସି ହସି କହିଲେ, "କଣ କହିଲେ, ପେସ୍କାରବାବୁ ? ଏଟା ଆପଣଙ୍କର ଅତି ବିନୟ କଥା । ଦେଖିଲୁଁ, ଷ୍ଟେସନମାଷ୍ଟରଙ୍କର ଆପଣଙ୍କୁ ନେଇ ଯେଉଁ ବ୍ୟସ୍ତଭାବ, ଏଥିରେ ଆପଣ କହୁଛନ୍ତି ଏଇ କଥା ! ବିଚରା ନିଜେ ଆସି ସେକେଣ୍ଡ କ୍ଲାସରେ ଆପଣଙ୍କ ପାଇଁ ଜାଗା କରି-ଦେଇ ଗଲା ଯାହା କୁହନ୍ତୁ, ପେସ୍କାର ଚାକିରିକୁ ଆଉ ଚାକିରି !"

ଏଇ ସମୟରେ ସେ ଖଦଡ଼ପିନ୍ଧା ବାବୁ ହଠାତ୍ ମୋ ଆଡ଼େ ଦୃଷ୍ଟି ଦେଇ ଠକ୍‌କରି ପଚାରିଲେ, "ବାବୁ, ଆପଣ କି କାମ କରନ୍ତି ?"

"ଗ୍ରୋ ମୋର ଫୁଡ୍ କାନୁନ୍‌ଗୋ, ଆଜ୍ଞା !"

"ଓ !" ଭଦ୍ରଲୋକ ମୁରୁକି ହସିଲେ, "ଆପଣଙ୍କର ତ ତା'ହେଲେ ଭଲ ଚାକିରି !"

ପେସ୍କାରବାବୁ ମୋ ପକ୍ଷରୁ ଉତ୍ତର ଦେଲେ, "ଭଲ କଣ, ଆଜ୍ଞା, ମୋରି ପାଖରେ ତ ଗଣ୍ଡା ଗଣ୍ଡା କାନଗୋଇ ଆସି ବସୁଛନ୍ତି । ଦି' ଧାଡ଼ି ରିପୋର୍ଟ ଲେଖିଆସୁନାହିଁ ଯେ ସାହେବ ମୋତେ ଡାକି କହିଲା, 'ଟିକେ

ସେମାନଙ୍କୁ ବତାଇଦିଅ ହେ !' ଆପଣ ଯେଉଁ ଭବରେ ଭଲ ବୋଲି କହୁଛନ୍ତି ସେ ପାଠ ଆଉ ନାହିଁ । (ମୋ ଆଡ଼କୁ ଗ୍ହିଁ) ଏ ପିଲାଲୋକ, ଚଳିଯାଉଥିବେ । ବାବୁ ତ ବିଭ କରି ନ ଥିବେ ।(ମୁଁ ମୁଣ୍ଡ ହଲାଇଲି, ଅର୍ଥାତ୍ ନା) ତା' ହେଲେ ଆଉ କଣ ? ମଫସଲରେ ଖାଇବା ପିଇବା ଦିଗରେ ବେଶ୍ ସୁବିଧା । ଖର୍ଚ୍ଚ ଆଉ କଣ ? (ମୁଁ ପକେଟରୁ ସେଇ ସିଜର୍ସ ସିଗ୍ରେଟ ଖଣ୍ଡେ କାଢି ବାବୁଙ୍କୁ ବଢ଼ାଇଦେଲି ।) ଏ ବର୍ଷାଯୋଗରେ କିମିତି ସେ ଅପନ୍ତରା ଗାଁରୁ ଆସିଲେ ?" ନିଜେ ତା'ର ଉତ୍ତର ଦେଲେ, "ଆସିବେ ନାହିଁ ! ଆପଣ ତ ପଢ଼ାଶୁଣା ଲୋକ ! କି ଜିନିଷ ଆମେ ଆଜି ବିସର୍ଜନ ଦେବାକୁ ଯାଉଛୁଁ ! ଓଃ, କି ବିପଦଟାଏ ନ ଘଟିଗଲା !"

ଗାଡି ଗ୍ଲିଛି । ଆକାଶରେ ମେଘ ଉଡୁଛି । ବିଜୁଳି ଚମକୁଛି । ହୁ ହୁ ପବନ ବୋହୁଛି । ଛୋଟ ଛୋଟ ଷ୍ଟେସନ ପାରି ହୋଇଯାଉଛି । ସବୁଠି ବିପୁଳ ଜନସମାଗମ—ସମବେତ କଣ୍ଠରେ ଗାନ୍ଧିଜୀଙ୍କର ଜୟଗୀତି ।

କୌଣସି ଏକ ଷ୍ଟେସନରେ ଆମ ଡବା ଭିତରକୁ ଜଣେ ଟିକେଟ୍ କଲେକ୍ଟର ପଶିଆସିଲେ; ତେଲିଙ୍ଗ ଯୁବତୀଆଡ଼େ ଆଖି ଘୂରାଇଆଣି ପେସ୍କାରବାବୁଙ୍କଠାରୁ ଆରମ୍ଭ କଲେ, "ଟିକେଟ୍ ପ୍ଲୀଜ୍ !" ମୋର ପାଳି ଠିକ୍ ତା'ପରେ ପଡ଼ିବ—ମୁଁ ରୀତିମତ ନର୍ଭସ । ପେସ୍କାରବାବୁ ସପ୍ଲାଇ-ବାବୁଙ୍କ ଆଡ଼େ ଗ୍ହିଁଲେ । ସପ୍ଲାଇବାବୁ ସିଗ୍ରେଟ ଧରାଇଲେ । ଟିକେଟ କଲେକ୍ଟର ଅସହିଷ୍ଣୁ ହୋଇ କହିଉଠିଲେ, "ଟିକେଟ୍ !" ବାର୍ଥ ଉପରେ ସିଧା ହୋଇ ବସି ଖଦଡ଼ବାବୁ ସେପଟରୁ ତା'ର ଉତ୍ତର ଦେଲେ, "ଆପଣଙ୍କର ତ ବୁକିଂ ବନ୍ଦ—ଟିକଟ ଆସିବ କେଉଁଠୁ ?"

ଟିକେଟ୍ କଲେକ୍ଟର କାନ୍ଧ ଦୋହଲାଇ କହିଲେ, "ବୁକିଂ ବନ୍ଦ ଥିଲା ତ ଆସିଲେ କାହିଁକି ?"

ଖଦଡ଼ବାବୁ ବାଗ୍ଲ ହୋଇଉଠିଲେ, "କଣ କହିଲେ ! କାହିଁକି ଆସିଲୁଁ ? ସେଟା ଆପଣ କାହୁଁ ବୁଝିବେ ? ଆପଣଙ୍କର ତ କାମ ହେଲା

ଟିକେଟ୍ ଦେଖିବା—ଦେଶର ଖବର ଆପଣ କାହୁଁ ପାଇବେ ? ଦେଶ, ଜାତି କେଉଁଠି ଯାଇ ପଡ଼ିଲଣି ତା'ର କିଛି ଖବର ରଖନ୍ତି ? ଗାନ୍ଧିମହାତ୍ମା ମଲ ନାହିଁ ତ, ଆମର ମେରୁଦଣ୍ଡ ଭଙ୍ଗିଦେଇଗଲ । ଆମେ ଯାଉଛୁଁ ସେଇ ମହାତ୍ମାଙ୍କର ଭସ୍ମ ବିସର୍ଜନ କରିବାକୁ । ମହା ଭାଗ୍ୟର କଥା, ଟିକେଟବାବୁ, ଏ ଗାଡ଼ିରେ ଆମକୁ ଥାନ ମିଳିଛି; କିଏ ପଚାରେ ତୁମ ଟିକେଟକୁ ! ଯାଉନ୍ତୁ, ଆପଣଙ୍କର ବଡ଼ ବଡ଼ କର୍ମଚାରୀମାନଙ୍କୁ ରିପୋର୍ଟ କରନ୍ତୁ । 'ମାଥାଇ' ପର୍ଯ୍ୟନ୍ତ କଥା ଚଲେ ବି ଆମେ ଲଢିବାକୁ ପ୍ରସ୍ତୁତ—'ମାଥାଇ' କିଛି ଅଚିହ୍ନା ଲୋକ ନୁହନ୍ତି ।"

ଟିକେଟବାବୁ ମୋ'ରି ସୁଟ୍‌କେସ ଉପରେ ଲଥ୍‌କରି ବସିପଡ଼ିଲେ । ଖଦଡ଼ପିନ୍ଧା ବାବୁଙ୍କୁ ଆମେ ସଶ୍ରଦ୍ଧ ଦୃଷ୍ଟିରେ ଚାହିଁରହିଲୁଁ । ଜଗତପୁରରେ ଗାଡ଼ି ଅଟକିଲ । ଟିକେଟବାବୁଙ୍କ ଚଷମାରେ ଝାଳ ଆସିଯାଇଥିଲ ବୋଧହୁଏ, ରୁମାଲରେ ଚଷମା କାଚ ପୋଛି ପୋଛି ସେ ଧୀରେ ଧୀରେ ଓହ୍ଲାଇଗଲେ । ଛୁଟି ନ ନେଇ ମୁଁ ଆସୁଥିଲି ବୋଲି ମନେ ମନେ ମୋର ଟିକିଏ ଭୟ ନ ଥିଲ କଣ ? କିନ୍ତୁ ଖଦଡ଼ପିନ୍ଧା ବାବୁଙ୍କ ବକ୍ତୃତା ପରେ ମୋ ମନ ବିଲକୁଲ ସାଫ୍ ହୋଇଗଲ; ଦମ୍ଭ, ସାହସ ଫେରିଆସିଲ । ମୁଁ ବି ଦି'ଗୋଡ଼ ପେସ୍କାରବାବୁଙ୍କ ବିଛଣାକୁ ଟେକିନେଇ ଚକା ପକାଇ ପେସ୍କାରବାବୁଙ୍କ ବି. ଏ. ଫେଲ ପୁଅ ଜନ୍ମେଜୟର ଭବିଷ୍ୟତ ବିଷୟରେ ଗପ ଯୋଡ଼ିଦେଲି ।

× × × × ×

ପାଟି ଚିତ୍କାରରେ ଜଗତପୁର ପ୍ଲାଟ୍‌ଫର୍ମ ଫାଟିପଡ଼ୁଛି । ଭରି ଭିଡ଼ । ଖୁନ୍ଦାଖୁନ୍ଦି । ପିମ୍ପୁଡ଼ିଧାର ପରି ଆମ ଡବା ଭିତରକୁ ତା' ପଛକୁ ତା' ପଛ ଲଗି ଲଗି ଗୋଟା ୧୦।୧୫ ଲୋକ ଚଢିଆସିଲେ । ମଇଳା ଲୁଗା, କଳା ଦେହ, ବୋକଚ୍ଚା, ବାଡ଼ି । ସପ୍ଲାଇବାବୁ ଛାଟ୍ ହୋଇ ଶୋଇପଡ଼ିଲେ । ପେସ୍କାରବାବୁ ଓ ମୁଁ ତେରଛେରି ହୋଇ ବସିଲୁଁ ଯାହା ଫଳରେ ସେ ବାର୍ଥରେ ଆଉ ତୃତୀୟ ଲୋକର ସ୍ଥାନ ରହିଲ ନାହିଁ । ଖଦଡ଼ବାବୁ ପୂର୍ବପରି

ତକିଆ ଠେସଦେଇ କୌତୁହଳୀ ଦୃଷ୍ଟିରେ ସେମାନଙ୍କୁ ଚାହିଁରହିଲେ । ତୈଲଙ୍ଗ ସ୍ୱାମୀ ଉଠିବସି ପିଙ୍କା ଲଗାଇଲେ । ସ୍ତ୍ରୀ ପରିଧାନ ସଜାଡ଼ିନେଲେ । କଳା-ଝାଳୁଆ ଦେହ ଓ ମଳିଆ ବୋକଚ୍ଛର ମିଶ୍ରିତ ଗନ୍ଧରେ ନାକ ଫଁ ଫଁ କରିଉଠିଲା । କାହାର ଟାଣୁଆ କଳା କହୁଣି, କାହାର ବାଡ଼ି ଦେହରେ ବାଜିଯାଉଛି—ଧସ୍ତାଧସ୍ତି—ଗୋଳମାଳ । ମନଟା ଏକାବେଳେ ବିଷାକ୍ତ ହୋଇଉଠିଲା । ଏପରି ଲୋକଙ୍କୁ ନେଇ କଣ କରଯାଇପାରେ, କୁହ ତ ! ଯାହା କରୁଥିଲ, କରୁଥିଲ; ଭଲ ଆଜିଭଳି ଦିନରେ ଟିକିଏ ସହିସମ୍ଭାଳି ଚଳନ୍ତ....

ପେସ୍କାରବାବୁ ପାଟିକରି କହିଉଠିଲେ, "ବସିପଡ଼, ଠିଆଟା ହୋଇ ରହିଲ କିଆଁ ?" ଗାଡ଼ି ଛାଡ଼ିଲା ।

ଗୁଞ୍ଜିଗାଞ୍ଜି ହୋଇ କୌଣସିମତେ ଡବାର ଚଟାଣ ଉପରେ ଜାଗା କରିନେଇ ଲୋକଗୁଡ଼ାକ ବସିଲେ ।

ଖଦଡ଼ବାବୁ ଏତେ ପର୍ଯ୍ୟନ୍ତ ହସ ହସ ମୁହଁରେ ଏ ଦୃଶ୍ୟ ଦେଖୁଥିଲେ । ବର୍ତ୍ତମାନ ତାଙ୍କ ଭିତରୁ ଜଣକୁ ଲକ୍ଷ୍ୟ କରି ସେ ପଚାରିଲେ "କୁଆଡ଼େ ଚାଲିଲ ଏ ରାତିରେ ?"

"କଟକ, ବାବୁ, ଆଉ କୁଆଡ଼େ ? ଏଇ ପାଞ୍ଚ ନିମିଟରେ ଓହ୍ଲାଇ ଯିବୁଁ ଯେ", ଉତ୍ତର ମିଳିଲା ।

ମୋ ମୁଣ୍ଡକୁ ରକ୍ତ ଚଢ଼ିଗଲା । ପଚାରିଲି, "କଟକ ଯିବ ବୋଲି ଆମ ମୁଣ୍ଡ କିଣିଛ ! କଉଁ କ୍ଲାସ ଟିକଟ କିଣିଛ ଦେଖେଁ ?"

"ବାବୁ, ଥାର୍ଡ କ୍ଲାସ ଟିକଟ । ଇଷ୍ଟେସନରେ ତ ଆଲୁଅ ନାହିଁ । କିଛି ଦେଖାଗଲା ନାହିଁ । ଗାଡ଼ି ତ ମୋଟେ ଦି ନିମିଟ ରହିବ ଏଠି । ପାଖଡବା ପାଇ ଚଢ଼ିଆସିଲୁଁ; ଆମେ କଣ ଜାଣିଥିଲୁଁ ନା..

"ତା କାହିଁକି ଜାଣିବ ? ଏ ଉଁବା ପାଖ ପଡ଼ିଲା....ଦେ ମାଡ଼ି ଯା । ତୁମ ଟିକଟର ଗ୍ଭରିଗୁଣ ମୂଲ ଦେଲେ ଏଠି ଥାନ ମିଳେ, ଏ କଥା ମାଲୁମ ଅଛି ତ ?" ମୁଁ ଦାନ୍ତ ଦେଖାଇ ପାଟି କରି ଉଠିଲି ।

ଖଦଡ଼ବାବୁ ହାତ ଦେଖାଇ ମୋତେ ଚୁପ୍ ରହିବାକୁ ଇଙ୍ଗିତ କରି କହିଲେ, "କଟକକୁ କାହିଁକି ଗ୍ଭଲିଛ ତା' ହେଲେ ?"

ଲୋକଟି କିପରି ସନ୍ଦେହ ଦୃଷ୍ଟିରେ ଗ୍ଭରିଆଡ଼କୁ ଗ୍ଭହିଁଲା ଓ ତା' ପରେ ଥଙ୍ଗେଇ ଥଙ୍ଗେଇ କହିଲା, "ମହାତ୍ମା ଗାନ୍ଧିଙ୍କ ସଲ ପଗ କାଲି ନଈରେ ପଡ଼ିବ....ଆପଣ ପଢ଼ାଶୁଣା ଲୋକ; ଜାଣୁଥିବେ, ବୁଝୁଥିବେ । ଆମେ ମୂର୍ଖ ଲୋକ, ଦୌଡ଼ିଛୁଁ ଟିକିଏ ଦର୍ଶନ ପାଇବୁଁ ବୋଲି ।"

ଖଦଡ଼ବାବୁଙ୍କ ଆଖି କପାଳକୁ ଉଠିଗଲା । କହିଲେ, "ଓହୋ.... ଗାନ୍ଧିମହାତ୍ମାଙ୍କର ଗୋଟେ ଗୋଟେ ବଡ଼ ଭକ୍ତ ତା' ହେଲେ ତୁମେମାନେ । ଯା ଜାଣିଥିଲେ ତ ମହାତ୍ମା ଶାନ୍ତିରେ ଟିକେ ମରିଥାନ୍ତା ! ଆଚ୍ଛା, ବାବୁ, ଗାନ୍ଧିମହାତ୍ମା କହିଥିଲେ ନା ଥାର୍ଡ କ୍ଳାସ ଟିକଟ କିଣି ସେକେଣ୍ଡ କ୍ଳାସକୁ ପଶିଆସିବ ? ଗାନ୍ଧିମହାତ୍ମା କହିଥିଲେ ନା ଏମିତି ମେଣ୍ଢାପଲ ପରି ହୋ ହୋ ହୋଇ ଅନ୍ୟର ଶାନ୍ତିସୁବିଧାରେ ଗୋଳମାଳ ଘଟାଇବ ? ତୁମରିମାନଙ୍କ ପାଇଁ ସେ ମହାପୁରୁଷ ଶେଷରେ ଜୀବନ ଦେଲା....ତଥାପି ତୁମର ଟିକେ ଚେତନା ହେଲା ନାହିଁ ! 'ଦୌଡ଼ିଛୁଁ ଟିକେ ଦର୍ଶନ ପାଇବୁଁ ବୋଲି' ! କଣ ଦେଖିବ, ସୁଆଙ୍ଗ ଯାତ୍ରା !" ଖଦଡ଼ବାବୁଙ୍କ ସ୍ୱର ଚଢିଯାଉଛି । ବେକମୂଳରେ ନେଳି ଶିର ଠିଆ ହୋଇଗଲାଣି । ମୁଁ ତାଙ୍କୁ ପ୍ରକୃତିସ୍ଥ କରିବା ଉଦ୍ଦେଶ୍ୟରେ ତାଙ୍କ ପାଖକୁ ଉଠିଯାଇ କହିଲି, "ଛାଡ଼ନ୍ତୁ, ଜୀବନ ତମାମ ତ ଗାଇ ଗାଇ ମହାତ୍ମା ଥକିଗଲା—କାହାରି କାନରେ ପଶିଲା ନାହିଁ । ଆଜି ମଲାରୁ ମନେ ପଡୁଛି.... ।"

ପେସ୍ଖାରବାବୁ ଗ୍ଭଦରଟିକୁ ବେକରେ ଭଲରୂପେ ଭିଡ଼ିଦେଇ କହିଲେ, "ହଇରେ ହେୟ. ଗାନ୍ଧି କିଏ, କ'ଣ କିଛି ମାଲୁମ ଅଛି, ନା ଖାଲି ଗୋଟେ....ଏଁ ?"

ପେସ୍କାରବାବୁଙ୍କ ଦୁଇ ଚକ୍ଷୁରୁ କୌତୁକ ଝରିପଡୁଛି । କିନ୍ତୁ ଯାହା ଉପରେ ଏ ପ୍ରଶ୍ନ ପଡ଼ିଲା ସେ ଏକ ସତର ଅଠର ବର୍ଷର ଟୋକା, ବୋଧହୁଏ ସ୍କୁଲ ବା କଲେଜ ଛାତ୍ର । ସେ ଯେପରି ପ୍ରସ୍ତୁତ ହୋଇଥିଲା, ଏକାଥରେ ଫାଟିପଡ଼ିଲା । କହିଲା ପାଟିକରି, "ହଁ, ମାଲୁମ ଅଛି, ଶୁଣିବ ! ଗାନ୍ଧିବୁଢ଼ା କହିଥିଲା ତୁମ ଭଳିଆ ଧୋବଧାଉଳିଆ ବାବୁଙ୍କୁ ଜବଦ୍ କରିବାକୁ ।"

ବଜ୍ର ପଡ଼ିଥିଲେ ମୁଁ ବେଶି ଆଶ୍ଚର୍ଯ୍ୟ ହୋଇ ନ ଥାନ୍ତି । ପେସ୍କାରବାବୁଙ୍କ ମୁହଁ ମଳିନ ପଡ଼ିଗଲା । କିନ୍ତୁ ଖଦଡ଼ବାବୁ ସଳଖ ହୋଇ ବସିଲେ ଓ ପଚାରିଲେ, "ଶୁଣେ, ଶୁଣେ, ଗାନ୍ଧି ମହାତ୍ମା କଅଣ କହିଥିଲେ ?"

ଆଉ ଜଣେ ତା ଭିତରୁ ପାଟି କରି ଉଠିଲା, "ତୁମ ଭଳିଆ ଲୋକଙ୍କୁ ଜବଦ୍ କରିବାକୁ । ବାବୁ, ଏତେ ତାତିଯାଉଛ କାହିଁକି ? ତୁମେ ତ ଯାଉଛ, ଆମେ ଯାଉଛୁଁ । ଦୁଇ ଚାରି ମିନିଟର କଥା । ତୁମ ଗଦିରେ ନ ବସି ଆମେ ତ ଦୂରେଇ ହୋଇ ବସିଛୁଁ । ତୁମର ଏତେ ଆଲୋଚନା, ହସ, ଥଟ୍ଟା କାହିଁକି ?"

ଆମ ଭିତରୁ କେହି ତା'ର ଉତ୍ତର ଦେବା ପୂର୍ବରୁ ଜଣେ ବୁଢ଼ାଳିଆ ଲୋକ ଉଠି ଠିଆ ହେଲା । ହାତ ଯୋଡ଼ି ଆମ ସମସ୍ତଙ୍କୁ ଉଦ୍ଦେଶ୍ୟ କରି କହିଲା, "ବାବୁ, ରାଗ ହୁଅନ୍ତୁ ନାହିଁ । ଆମେ ଆଉ ଦଣ୍ଡକେ ଓହ୍ଲାଇଯିବୁଁ ଯେ, ରିଷା ହୁଅ ନାହିଁ । ତୁମେ ପଢ଼ାଶୁଣା ଲୋକ—ପୁସ୍ତକରୁ ପଢ଼ି ବୁଝୁଥିବ । ଆମେ ତ ମୂର୍ଖ, ଚାଷୀମୂଲିଆ ଲୋକ । ଆମେ କାହୁଁ ବୁଝିବୁଁ ? କିନ୍ତୁ ଆମ ଦମ୍ଭ ଭାଙ୍ଗିଗଲାଣି । ଗାନ୍ଧି ମଲା ନାହିଁ ଯେ ଆମ ଗରିବ ଦୁଃଖୀ ଲୋକଙ୍କୁ ଭସାଇଦେଇଗଲା । କାହା ପାଖରେ କାନ୍ଦିବୁଁ, କିଏ ଶୁଣିବ ? ତୁମମାନଙ୍କ ଭଳିଆ ବାବୁମାନଙ୍କ ନିକଟରେ ଗୋଡ଼ ଭାଙ୍ଗି ଠିଆ ହେବା ଛଡ଼ା ଆମର ଆଉ ଚାରା କ'ଣ ?"

ଖଦଡ଼ବାବୁ ଉପର ପକେଟରୁ ଖଦଡ଼ ରୁମାଲ ବାହାର କରି ବେକ ମୂଳରୁ ଝାଳ ପୋଛିବାକୁ ଲାଗିଲେ । ପେସ୍କାରବାବୁ ନିଜର ଜିନିଷପତ୍ର

ଯାଞ୍ଚ କରିନେଲେ । ସପ୍ଲାଇବାବୁ ମୋ କାନପାଖକୁ ମୁହଁ ଆଣି କହିଲେ, "ଦେଖୁଛ ନା ! ମୁଁ କଣ କହୁଥିଲି ! ଏବେ କାନରେ ଶୁଣିଲ ନା ! ଯେତେ ବଡ଼ ମୁହଁ ନୁହେଁ ସେତେ ବଡ଼ କଥା । ଆଉ ପାରିହବ, କହୁଛନ୍ତି ?"

ଷ୍ଟେସନରେ ଆସି ଗାଡ଼ି ପଡ଼ିଲା । ମୁଁ ଭାବୁଥିଲି, ଆମ ଜାତିଟାର ଆଶୁ ବିପର୍ଯ୍ୟୟ କଥା—ସ୍ୱାଧୀନତା ମିଳିଲା ସିନା..ଏପରି ଲୋକଗୁଡ଼ାଙ୍କୁ ନେଇ କିପରି ଦେଶଟାର ଉନ୍ନତି ହେବ ! ଆଇନକାନୁନକୁ ଭୟ ନାହିଁ । ମଣିଷକୁ ଖାତିର ନାହିଁ । ଦେଶ ଆଗରେ ଯେଉଁ ଦାୟିତ୍ୱ ରହିଛି ତାକୁ କେମିତି ମୁଣ୍ଡ ଲଗାଇବାକୁ ହେବ....ମୁଁ ଆଖି ଆଗରେ ଅନ୍ଧାର ଦେଖୁଥିଲି ।

କଟକ । ଜନାରଣ୍ୟ । ବଡ଼ ବଡ଼ ଲୋକ—ପ୍ରଧାନମନ୍ତ୍ରୀଙ୍କଠାରୁ ହାଡ଼ି ସର୍ଦ୍ଦାର—ସମସ୍ତେ ରୁଣ୍ଡ ହୋଇଛନ୍ତି । ପେଣ୍ଟଟାଇ ପରିହିତ ସାହେବ ସୁବା, ଖଦଡ଼ପିନ୍ଧା ନେତା, ଛୋଟ ବଡ଼—ଏକ କଥାରେ ଆବାଳବୃଦ୍ଧବନିତା । ପେସ୍କାରବାବୁଙ୍କ କଣ୍ଠସ୍ୱରରେ ମୋର ହୋସ୍‌ହେଲା । ସେ ଗଳା ନରମାଇ ଆମର ସହଯାତ୍ରୀମାନଙ୍କୁ ଶୁଣାଉଛନ୍ତି, "ବୁଝିଲ, ତମ୍ଭେମାନେ ଟିକିଏ ରହିଯାଅ, ଆମେ ଆଗେ ଓହ୍ଲାଇଯାଉଁ ।" କଥାଟା ବଡ଼ ଠିକ । ଟିକେଟ୍ କଲେକ୍‌ଟର ଆସିବା ପୂର୍ବରୁ ଓହ୍ଲାଇଯାଇ ଲୋକମାନଙ୍କ ମେଳରେ ମିଶିଗଲେ ଚିନ୍ତା ନ ଥିବ । ମୁଁ ବାଡ଼ା ଧରି ଖପ୍ କରି ଓହ୍ଲାଇପଡ଼ିଥାନ୍ତି । କିନ୍ତୁ ଖଦଡ଼ବାବୁ ଦି' ବାଡ଼ା ଧରି ଆଦେଶ ଦେଲେ, "ଆଃ, ଏମିତି ବ୍ୟସ୍ତ କାହିଁକି ହେଉଛ ? ଯାଉନ୍ତୁ..ସେମାନେ ଯାଉନ୍ତୁ ନା, ଯାଇ କଅଣ ଉଦ୍ଧାର କରିବେ କରନ୍ତୁ ନା ।" ଅନ୍ୟମାନେ ଗୋଟି ଗୋଟି ଓହ୍ଲାଇଗଲେ । ଖଦଡ଼ପିନ୍ଧା ବାବୁଙ୍କ ବାହୁଛାୟା ତଳେ ମୁଁ ଅଟକିଗଲି । କଥାଟା ଏତେବେଳେ ବୁଝିପାରିଲି । ଭଦ୍ର ସାଥିରେ ନେଇ ଆମେ ଆସିଥାଇଁ..ଏତେ ବେଗି ଛାଡ଼ି ଓହ୍ଲାଇଯିବାଟା କେଡ଼େ ଅସୁନ୍ଦର ଦେଖାଯିବ ! ଏତେ ଲୋକ—ଏତେ ଜନସମାଗମ ଆଗରେ ସେଇ ଟ୍ରେନର ବାଡ଼ା ଧରି ଆଉ କିଛିକ୍ଷଣ ରହିପାରିଲେ କେତେବଡ଼ ଏଫେକ୍‌ଟ ହେଉଛି ସେଟା ଏତେବେଳେ ଯାଇ ସିନା ବୁଝିଲି ।

ସକାଳ ଠିକ୍ ହୋଇନାହିଁ । ଇଲେକ୍‌ଟ୍ରିକ ଆଲୁଅରେ ମନେ ହେଉଛି ମୋତେ ଯେପରି ସମସ୍ତେ ଗ୍ୱହିଁଛନ୍ତି । ହଠାତ୍ ମନେହେଉଛି ମୁଁ ଯେପରି ଦୂର ମଫସଲର ଜଣେ ଅକିଞ୍ଚିତ୍‌କର କାନଗୋଇ ନ୍‌ହେଁ । ମୋ'ଠି ଆହୁରି ମୂଲ୍ୟ ଅଛି—ଆହୁରି ସମ୍ଭବତା ଅଛି । ଖଦଡ଼ବାବୁଙ୍କ ପଞ୍ଜାବୀର ଖଦଡ଼ ସ୍ଲିଭ୍ ମୋ ପିଠି ଛୁଇଁଯାଉଛି । ପ୍ଲାଟଫର୍ମରେ ହୁଏତ ଆମ ସାଇବ ଚଳାଚଳ ହେଉଛନ୍ତି । ଛୁଟି ନ ନେଇ ଏମିତି ଖସି ପଳାଇ ଆସିବାର ଭୁଲଠିକ ପ୍ରଶ୍ନ ନିତାନ୍ତ ହାସ୍ୟକର ମନେହେଉଛି ।

କେତେ ସମୟ ଏପରି ଧ୍ୟାନସ୍ଥ ଅବସ୍ଥାରେ ଛିଡ଼ା ହୋଇ ରହିଥିଲି ଜାଣେ ନାହିଁ । ଖଦଡ଼ବାବୁ ଯେତେବେଳେ ପକେଟରୁ ଖଦଡ଼ ଟୋପି କାଢ଼ି ମୁଣ୍ଡରେ ଦେଇ ଝାଡ଼ିଝୁଡ଼ି ହୋଇ ଛିଡ଼ା ହେଲେ ମୁଁ ଫେରିଗ୍ୱହିଁ ଦେଖେଁ ଆଗ କୋଠା ଉପରେ କେମେରା । ମୁଁ ଡାହାଣ ହାତକୁ ପେଣ୍ଟ ପକେଟରେ ଉର୍ଭି କରିଦେଇ ମୋ ଦେହଟାକୁ ଟିକେ ସଳଖେଇନେଇ ସ୍ଥିରଦୃଷ୍ଟିରେ ଗ୍ୱହିଁରହିଲି ଆଗକୁ । ସକାଳ ହୋଇଯାଇଛି ।

× × × ×

ନୂଆ ସିନେମା ଘରେ ଗାନ୍ଧି-ଅସ୍ଥି-ବିସର୍ଜନ-ସମ୍ବଳିତ ଯେଉଁ ଚଳଚ୍ଚିତ୍ର ଦେଖାଯାଉଛି ସେଥିରେ ଆପଣ ନିରୀକ୍ଷଣ କରି ଦେଖିଲେ ଦେଖି ପାରିବେ—ପେସ୍କାରବାବୁ ବାଡ଼ି ଧରି ଆମ ଡବାର ସେଇ ଲୋକଗୁଡ଼ାଙ୍କୁ କିପରି ତଡୁଛନ୍ତି—ଦି' ବାଡ଼ାକୁ ଦି' ହାତରେ ଧରି ଖଦଡ଼ବାବୁ କିପରି ବିଗଳିତ ଦୃଷ୍ଟିରେ ଶୂନ୍ୟକୁ ଗ୍ୱହିଁରହିଛନ୍ତି । ବାତାୟନ ପାର୍ଶ୍ୱରେ ସେଇ ସ୍ତବ୍ଧ ତୈଲଙ୍ଗ୍ୟ ରମଣୀ (ପୁରୁଷ ଓ ବୃଦ୍ଧା ଅଦ୍ୟାପି ନିଦ୍ରିତ ବୋଧହୁଏ) ଓ ଖଦଡ଼ବାବୁଙ୍କ ଦେହକୁ ଲଗାଲଗି ହୋଇ ହାଫ୍‌ପେଣ୍ଟ, ବାଦାମୀ କେଟ୍‌ସ୍ ପରିହିତ, ସୋଲହେଟ-ମସ୍ତକ ଯେଉଁ ବାଙ୍ଗର ଲୋକଟି ତଟସ୍ଥ ହୋଇ ଛିଡ଼ା ହୋଇଛି.... ସେ ମୁଁ ।

# କେବଳ ପୁରୁଷମାନଙ୍କ ପାଇଁ

ଇଟାରଙ୍ଗର ଗାଡ଼ିଟାକୁ ପୂରା ପଚାଶ ଏମ୍.ପି.ଏଚ୍‌ରେ ଦୌଡ଼ାଇ-ଦେଇ ମୁଁ ସିଟ୍‌ଉପରେ ଆଉଜି ବସିଲି । ମାସଟା ଅକ୍‌ଟୋବର । ସନ୍ଧ୍ୟା ହୋଇଆସୁଛି । ପଶ୍ଚିମପଟ ପାହାଡ଼ ପଛଆଡ଼େ ସୂର୍ଯ୍ୟ କେତେବେଳୁ ଅସ୍ତ ହୋଇଗଲେଣି । ଏକ ଅଦ୍ଭୁତ ବର୍ଣ୍ଣଛଟାରେ ଚତୁର୍ଦ୍ଦିଗ ରଙ୍ଗିନ୍ ହୋଇ-ଉଠୁଛି । ଏଇ ଚମତ୍କାର ପରିବେଶ ଭିତରେ ଫିଆଟଟା ମୁହଁମାଡ଼ି କ୍ଷିପ୍ରବେଗରେ ଦଉଡୁଛି । ଇଞ୍ଜିନର ଗୁଞ୍ଜନରେ ଏକ ଅପୂର୍ବ ସଙ୍ଗୀତ ।

ରୀଣାକୁ ଜବାବ ଦେଇଆସିଥିଲି ଶନିବାର ସନ୍ଧ୍ୟାସୁଦ୍ଧା ଫେରି ଆସିବାକୁ । ଅଥଚ ଆଜି ମଙ୍ଗଳବାର, ସନ୍ଧ୍ୟା ଛ'ଟା ବାଜିଗଲାଣି । କଣ କହି ରୀଣାକୁ କୈଫିୟତ୍ ଦେବି !

ସେଦିନ ଟୁରରେ ବାହାରିଲାବେଳର କଥା ମନେପଡୁଛି । ମୋ ଛାତି ଉପରେ ମୁହଁ ଲୁଚାଇ ସେ କି ଅଧୀର କାନ୍ଦଣା—ନା, ନା, ମୁଁ ତୁମକୁ ଛାଡ଼ିବି ନାହିଁ । ତୁମେ ଯାଇପାରିବ ନାହିଁ ।

କେତେ ବୁଝାଇଲି—ଦେଖ, ରୀଣା, ଚାରିମାସ ହେଲା ହେଡ୍‌କ୍ୱାଟର ଛାଡ଼ି ଗୋଡ଼ କାଢିନାହିଁ । ଏଥର ନ ଗଲେ ଚଳିବ ନାହିଁ । କି କଷ୍ଟରେ ଯେ ତୁମକୁ ଛାଡ଼ି ଯାଉଛି ତା' କେମିତି ବୁଝାଇବି ! ମାତ୍ର ତିନିଟା ଦିନ—ଶନିବାର ସଞ୍ଜସୁଦ୍ଧା ପହଞ୍ଚିଯିବି । ସୁନାଟା ପରା, ମୋ ରାଣୀ, ଅବୁଝା ହୁଅ ନାହିଁ....

ଶନିବାର ଯାଇ ରବିବାର, ସୋମବାର, ଆଜି ଆସି ହେଲା ମଙ୍ଗଳବାର । ବାହାରି ଆସିବାର କୌଣସି ଉପାୟ ନ ଥିଲା । ପଛକୁ ପଛ କାମ ଏମିତି ଲାଗିଗଲା ଯେ.. କିନ୍ତୁ ରୀଣା କଣ ଏ ସବୁ ବୁଝିବ !

ଏକସିଲରେଟର ଦବାଇ ଗାଡ଼ିର ବେଗ ଆଉରି ବଢ଼ାଇଦେଲି । ଆକାଶରେ ନାନା ରଙ୍ଗର ଖେଳ । ଆଲୋକ କ୍ରମେ ମଉଳିଆସୁଛି । ଏଠି ସେଠି ଗୋଟାଏ ଗୋଟାଏ ତାରା ଫୁଟିଉଠୁଛନ୍ତି । ପୂର୍ବଦିଗ ଆକାଶ ପ୍ରାନ୍ତ କ୍ରମେ ଉଜ୍ଜ୍ୱଳ ହୋଇଉଠୁଛି । ଜହ୍ନ ଉଠିବ । ଆଜିର ତିଥିଟା କଣ ? ମନଟା ଉଲ୍ଲସିତ ହୋଇଉଠିଲା । ଝଲମଲ ନୀଳ ଜ୍ୟୋତ୍ସ୍ନା ଆଲୋକରେ ରୀଣାକୁ ବକ୍ଷକୁ ଆଉଜାଇ ଆଣି ତା'ର କାନେ କାନେ କହିବି..

ହେଡ୍‌କ୍ୱାଟର ଆଉ କେତେ ମାଇଲ ? ପଚାଶ—ତା' ହେଲେ ତ ଘଣ୍ଟାକ ଭିତରେ ପହଞ୍ଚିଯାଉଛି । ଗୁଣୁ ଗୁଣୁ କରି ଗୋଟାଏ ପୁରୁଣା ଗୀତର ସ୍ୱର ଧରିଲି । ବାଃ, ଜୀବନଟା ବାସ୍ତବିକ କେଡ଼େ ସୁନ୍ଦର ! ପରମସ୍ରଷ୍ଟାଙ୍କ ଉଦ୍ଦେଶ୍ୟରେ ଷ୍ଟିଅରିଂରୁ ଦୁଇହାତ ଉଠାଇ କପାଳରେ ଲଗାଇଲି....

ଇଞ୍ଜିନ ଭିତରେ କେଉଁଠି ଗୋଟାଏ କେମିତିକା ଆୱାଜ ଓ ତା'ପରେ ଗାଡ଼ିର ବେଗ ହଠାତ୍ କମିଆସିଲା । ଏକ୍‌ସିଲରେଟର ଯେତେ ଚାପିଲେ କିଛି ଫଳ ହେଲା ନାହିଁ । ଗାଡ଼ିଟା ଅଟକିଗଲା । ଇଞ୍ଜିନ ବନ୍ଦ ହୋଇଗଲା । କିଛି ସମୟ ଛାଡ଼ିଦେଲି । ଇଞ୍ଜିନଟା ବୋଧହୁଏ ଅତିଶୟ ଗରମ ହୋଇଯାଇଛି । ଏକାଦମରେ ତିନିଶହ ମାଇଲ ଆସିଛି ତ ! ଗୋଟାଏ ସିଗ୍ରେଟ

ଧରଇ ଷ୍ଟାର୍ଟ ଦେଲି । ଚର୍..ଚର୍..ଚର୍..ଷ୍ଟାର୍ଟ ଧରୁନାହିଁ । କଥା କଣ? କବାଟ ଖୋଲି ବାହାରିଲି । ବନେଟ୍ ଖୋଲିଲି ।

ପଛପଟ ସିଟ୍‌ରେ ଯଦୁଆ ବସି ଢୁଳାଉଥିଲା । ଧଡ଼ପଡ଼ ହୋଇ ଉଠି ବାହାରକୁ ଆସିଲା ।

'ଟର୍ଚ୍ଚ ଲାଇଟ୍‌ଟା ବାହାର କର ।'

କିନ୍ତୁ ବାକ୍‌ସରେ ଟର୍ଚ୍ଚ ଲାଇଟ୍ ଥିଲା ପରି ତ ମନେ ହେଉନାହିଁ । ଯଦୁଆ ବାକସ ଗୁବିକାଠି ମାଗୁଥିଲା । ତାକୁ ଧମକ ଦେଇ ଚୁପ୍ କରାଇ-ଦେଲି । ଅସ୍ପଷ୍ଟ ଚନ୍ଦ୍ରାଲୋକରେ ଇଞ୍ଜିନର ଭିତର କିଛି ଦେଖାଯାଉନାହିଁ । ଦେଖିହେଲେ ବି କିଛି ଲାଭ ହୋଇ ନ ଥାନ୍ତା । କାରଣ ଷ୍ଟିଅରିଂ ଧରିବା ଛଡ଼ା ଗାଡ଼ି କଥା ବା ଇଞ୍ଜିନ କଥା ମୁଁ କିଛି ବୁଝେ ନାହିଁ । ନୂଆ ଗାଡ଼ିଟା ଏମିତି ବିଗିଡ଼ିଯିବ, ଏ କଥା କିଏ କଳ୍ପନା କରିପାରିଥାନ୍ତା !

ଯଦୁଆ ଡରି ଡରି କହିଆସୁଥିଲା—"ସାର୍, ଗାଡ଼ିଟାକୁ ଟିକେ ଠେଲି-ଦେବି କି ?"

ଧମକ ଦେଲି, "ଚୁପ୍ କର । ସବୁ ଜାଣିଛି ! ବାହାରିଲା, ଗାଡ଼ିଟାକୁ ଠେଲିଦେବ !"

ଅନ୍ଧାରିଆ ଇଞ୍ଜିନ ଗର୍ଭକୁ ଗୁହିଁରହି ବଡ଼ ନିଃସହାୟ ବୋଧକଲି । ପବନ ହୁ ହୁ ହୋଇ ବହୁଛି । ଘଡ଼ିଟାକୁ ଗୁହିଁଲି—ସାତଟା କୋଡ଼ିଏ । ଛାତି ଭିତରେ କଣ ଯେପରି ଲେଉଟିପଡ଼ିଲା । ଯଦୁଆ କଥା ହୁଏତ ଫଳ ଦେଇପାରେ ।

"ଆଚ୍ଛା, ଗାଡ଼ିଟାକୁ ପଛଆଡୁ ଟିକେ ପେଲିଲୁ ଦେଖି ।"

ମୁଁ ଷ୍ଟିଅରିଂ ଧରି ବସିଲି । ଯଦୁଆ ଗାଡ଼ିଟାକୁ ପେଲିବାକୁ ଚେଷ୍ଟା କଲା । ବହୁକଷ୍ଟରେ ଗାଡ଼ିଟା ସାମାନ୍ୟ ଘୁଞ୍ଚି ତା'ପରେ ଟିକେ ଗଡ଼ିଗଲିଲା ।

ଆଗରସ୍ତା ତାଲୁ ଥିଲ ପଗ ! ଗିଅର ଦେଲି—କ୍ଲଚ୍ ଛାଡ଼ିଲି । ନା, ଷ୍ଟାର୍ଟ ଧରୁ-ନାହିଁ । ଥରେ, ଦି'ଥର, ତିନିଥର ଚେଷ୍ଟା କଲେ ବି ଯେଉଁ କଥାକୁ ସେଇ କଥା ।

ଗାଡ଼ିରୁ ବାହାରିଆସିଲି । ଚତୁର୍ଦ୍ଦିଗ ଜ୍ୟୋତ୍ସ୍ନାଲୋକରେ ଝଲମଲ କରୁଛି । ଟେକା ହୋଇଥିବା ବନେଟ୍‌ରେ ପବନ ବାଡ଼େଇ ହୋଇ ହସୁଛି । ଜ୍ୟୋତ୍ସ୍ନା ହସୁଛି, ପବନ ହସୁଛି । ସମସ୍ତେ ଯେପରି ମୋତେ ବିଦ୍ରୂପ କରି ହସୁଛନ୍ତି । ହୁସ୍ ହୁସ କରି ଉଭୟ ପଟରୁ ଗାଡ଼ିସବୁ କ୍ଷିପ୍ର ଗତିରେ ଗ୍ଲଲି-ଯାଉଛନ୍ତି । କେହି ହେଲେ ଅଟକୁନାହାନ୍ତି । ମନ ଭିତରେ ଅଭିମାନ ଜମିଉଠୁଛି । ହାତ ଟେକି କୌଣସି ଗାଡ଼ିକୁ ଅଟକାଇବାକୁ ମୋର ଆଗ୍ରହ ନାହିଁ ବା ଶକ୍ତି ନାହିଁ ।

ହେ ଭଗବାନ୍, ଏ କି ପରୀକ୍ଷା ତୁମର ? ତିନି ଶହ ମାଇଲ ଆସିଲି; କିଛି କେଉଁଠି ହେଲନାହିଁ । ଆଉ ମାତ୍ର ଗ୍ଲଳିଶ ପଗ୍ଶଟା ମାଇଲ, ଯାଇଥିଲେ ଏତେବେଳକୁ ପହୁଞ୍ଚିଯାଇସାରନ୍ତିଣି । ଦୀର୍ଘ ଛ'ଦିନ ପରେ ରୀଣାକୁ ଦେଖିଥାନ୍ତି । ଦୁଇଟି ନିରୀହ ପ୍ରାଣୀକୁ ଏମିତି କଲବଲ କରିବାରେ ଏ କି ପରିହାସ !

ଆଉ ଗୋଟାଏ ସିଗ୍ରେଟ ଧରାଇ ନିବିଷ୍ଟଚିତ୍ତରେ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ଜଣାଇଲି । ପଶାଖେଳରେ ମତ୍ତ ଥାଇ ସୁଦ୍ଧା ତୁମେ ତ ଦ୍ରୌପଦୀଙ୍କ କାତର କ୍ରନ୍ଦନ ଶୁଣିପାରି ତା'ର ବ୍ୟବସ୍ଥା କରିଥିଲ । ବିପନ୍ନ ଏକ ଗଜର ପ୍ରାର୍ଥନା ତୁମକୁ ବିଚଳିତ କରିପକାଇଲା । ତୁମେ ପରା ନିରାଶ୍ରୟର ଆଶ୍ରୟ । ଅଥଚ ମୁଁ ଏଇ ରାସ୍ତାକଡ଼ରେ ଅସହାୟ ଅବସ୍ଥାରେ ପଡ଼ିରହିଛି, ରାତି ଆସି ନଅଟା ହେଲାଣି, ସେଆଡ଼େ ରୀଣା କାନ୍ଦି କାନ୍ଦି ନିସ୍ତେଜ ହୋଇ ପଡ଼ିବଣି । ଏତେ ବାଟ ଆସି ଏଇଠି ପଡ଼ିରହି କଣ ଏଇ ଜ୍ୟୋତ୍ସ୍ନାରାତି କଟାଇବି !

ଆଉ କେତେ ସମୟ କଟିଗଲଣି ଖିଆଲ ନାହିଁ । ଯଦୁଆ ଗଛଉହାଡ଼ରେ ବିଡ଼ି ପିଉଛି । ମୁଁ ଏପଟ ସେପଟ ଅସ୍ଥିରଭବରେ ଘୁରଫେର କରୁଛି । ଫିଆଟ୍ ନିର୍ବାକ୍, ନିସ୍ପନ୍ଦ । ମଲା ଗୋରୁର ଆଖି ପରି ତା'ର ଦୁଇଟା ହେଡ୍‌ଲାଇଟ୍ ନିଷ୍ପ୍ରଭ ।

ବିକଟ ଶବ୍ଦ କରି ଏକ ବିରାଟ ଟ୍ରକ୍ ଆଗଆଡୁ ଆସି ଗାଡ଼ିପାଖରେ ଅଟକିଗଲା । ପଞ୍ଜାବୀ ଡ୍ରାଇଭର ମୁହଁ କାଢ଼ି ପଚାରିଲା, "କ୍ୟା ହୁଆ, ବାବୁସାବ୍, ଗାଡ଼ିମେ କୋଇ ଗଡ୍‌ବଡ୍ ?"

ପାଟି ଶୁଖିଯାଉଛି । ଟ୍ରକପାଖକୁ ଲାଗିଯାଇ ଥଙ୍ଗେଇ ଥଙ୍ଗେଇ କହିଲି, "ସର୍ଦ୍ଦାରଜୀ, ବିଲକୁଲ ନୟା ଗାଡ଼ି—ତିନିଶ ମାଇଲ ଆସିଲା, କିଛି ନାହିଁ । ଏଇଠି ହଠାତ୍ ବନ୍ଦ ହୋଇଗଲା । ମେହେରବାନ୍ କର୍‌କେ ଦେଖ..

"ଆଚ୍ଛା, ଆଚ୍ଛା" କହି ସର୍ଦ୍ଦାରଜୀ ଟ୍ରକରୁ ଓହ୍ଲାଇଲେ । ମୁଣ୍ଡରେ ପଗଡ଼ି, ମୁହଁସାରା ଦାଢ଼ି, ପରିଧେୟ ସଲଓ୍ୱାର, କମିଜ୍ । ଚଉଡ଼ା କବ୍‌ଜି ଉପରେ ହୁଗୁଳା କଡ଼ା । ପାଖାପାଖି ଛ'ଫୁଟ ଉଚ୍ଚର ମଣିଷଟା । ଶ୍ମଶ୍ରୁଭରା ମୁହଁ ଭିତରେ ବଡ଼ ବଡ଼ ଦୁଇଟି ସୁନ୍ଦର ଉଜ୍ଜ୍ୱଳ ଆଖି । ବେଶଭୂଷା ସହିତ ସେ ଆଖିଯୋଡ଼ିକ ଠିକ୍ ଖାପ ଖାଉନାହିଁ । ସେ ଆଖିଆଡ଼େ ଚାହିଁ ଯେପରି ଟିକିଏ ଭରସା ପାଇଲି ।

ସର୍ଦ୍ଦାରଜୀ ଗାଡ଼ିପାଖକୁ ଆସି ମାଗିଲେ ବତୀ । ବତୀ ତ ନାହିଁ । ସେକଥା ଅସ୍ପଷ୍ଟ କଣ୍ଠରେ ଜଣାଇଲି । ସର୍ଦ୍ଦାରଜୀ ହୋ ହୋ କରି ହସି-ଉଠିଲେ । "ମଙ୍ଗଲୁ, ବତୀ ଲାଓ ।" କ୍ଲିନର ମଙ୍ଗୁଲୁ ଏକ ଲମ୍ବା ଟର୍ଚ୍ଚ ଲାଇଟ୍ ଆଣି ଇଞ୍ଜିନ ଭିତରକୁ ଆଲୁଅ ପକାଇଲା । ସର୍ଦ୍ଦାରଜୀ କମିଜର ହାତ ଗୋଟାଇନେଇ ଇଞ୍ଜିନ ଭିତରକୁ ଝୁଙ୍କିପଡ଼ିଲେ । ଯଦୁଆ ଟୁଲବେଗ୍ ଖୋଲି ରେଞ୍ଚ୍ ସ୍କ୍ରେନର ବଢ଼ାଇଦେଲା । ମୁଁ ଖଣ୍ଡେଦୂରକୁ ଯାଇ ସିଗ୍ରେଟରେ ଘନ ଘନ ଟାଣ ଦେଇ ସ୍ଥିରକଲି ଜୀବନଟା ଗୋଟାଏ ନିତାନ୍ତ 'ସିଲି' ବ୍ୟାପାର ।

ଦଶ ମିନିଟ, ପନ୍ଦର ମିନିଟ, ଅଧଘଣ୍ଟାଏ କଟିଗଲା । ସର୍ଦ୍ଦାରଜୀ ସେମିତି ଇଞ୍ଜିନ ଭିତରକୁ ଝୁଲି ପଡ଼ିଛନ୍ତି । ତାଙ୍କର ସଫେଦ ପଗଡ଼ିର ପ୍ରାନ୍ତ ପବନରେ ଉଡ଼ୁଛି । ଶେଷରେ ସେ ସିଧା ହୋଇ ଠିଆ ହେଲେ । ପକେଟରୁ ଏକ ମଳିଆ ମୋଟା ରୁମାଲ ବାହାର କରି ସେଥିରେ ରଗଡ଼ି ରଗଡ଼ି ହାତ ଆଙ୍ଗୁଳି ପୋଛିଲେ । ପଗଡ଼ି କାନିରେ ମୁହଁ ପୋଛିଲେ । ମୁଁ ସେତେବେଳକୁ ତାଙ୍କ ପାଖକୁ ଲାଗିଆସିଲିଣି । ତାଙ୍କର କଣ୍ଠନିଃସୃତ ପଦେ କଥା ଉପରେ ଯେପରି ମୋର ସମସ୍ତ ଇହକାଳ ପରକାଳ ନିର୍ଭର କରୁଛି । "କଣ, ସବୁ ଠିକ ହୋଇଗଲା ତ ? ମୁଁ ଗାଡ଼ି ନେଇ ଯାଇପାରିବି ତ ?"

ସର୍ଦ୍ଦାରଜୀଙ୍କ କଣ୍ଠରେ ସେଇ ଉଚ୍ଚାଙ୍ଗ ହସ । ଘନ ଶ୍ମଶ୍ରୁତଳେ ଦନ୍ତ-ପନ୍ତି ଜହ୍ନ ଆଲୁଅରେ ଝକ ଝକ କରୁଛି । ସେ ଖଣ୍ଡେ ଦୂରକୁ ଆଗେଇ-ଗଲେ । ତା' ପରେ ଦୁହେଁ ମୁହାଁମୁହିଁ ହୋଇ ଛିଡ଼ା ହେଲୁଁ । ତାଙ୍କର ହାତ ମୋ ଦୁଇ କାନ୍ଧ ଉପରେ । ଅନୁଚ୍ଚ ଅଥଚ ସ୍ପଷ୍ଟ କଣ୍ଠରେ ପଗ୍ଚରିଲେ—

"ବାବୁଜୀ, ସାଦି କବ୍‌ସେ ହୁଆ ?"

ଚମକିପଡ଼ିଲି । କଥାବାର୍ତ୍ତାରେ ତ ମୁଁ ରୀଣା କଥା ମୋଟେ ଉଚ୍ଚାରଣ କରିନାହିଁ । ଏ ଜାଣିଲା କେଉଁଠୁ ମୋର ଅନ୍ତରର ସମ୍ବାଦ ! ସର୍ଦ୍ଦାରଜୀ ହସ ହସ ମୁଖରେ କହିଲେ—

"ଘବଡ଼ାଇୟେ ନେହିଁ, ବାବୁ ସାବ୍ ! ବୋଲିୟେ ନା, କେତେ ମଇନା ହେଲା ସାଦି ହେଲାଣି ?"

ଥଙ୍ଗେଇ ଥଙ୍ଗେଇ କହିଲି, "ଏଇ, ଗ୍ଚର ମଇନା ହୋଗା । ଲେକିନ୍ ସର୍ଦ୍ଦାରଜୀ, ଗାଡ଼ିର କଣ ହେଲା ? ସବୁ ଠିକ୍ ଅଛି ତ?"

ସର୍ଦ୍ଦାର କିଛି ନ ଶୁଣିଲା ଭଳି ପୁଣି ପ୍ରଶ୍ନ କଲେ—"ବିବିଜୀ ଘର୍‌ମେ ଇନ୍ତଜାର କରୁଛନ୍ତି ? ହୈ ନା ? ଲେକିନ୍ ଆପ୍ ଏତନା ପରିସାନ୍ ହେଉଛନ୍ତି

କାହିଁକି ? ଏ ତୋ ମସିନ୍ ହେ—ମସିନ୍‌ମେ ଗଡ଼ ବଡ଼ ହମେସା ହୋଇ-ଥାଏ । ଏ ମାମୁଲି ବାତ୍ ହେ । ମେରା ବାତ୍ ଶୁନୀୟେ । ହାମାରା ସାଥ୍ ଚଲୀଏ ମେରେ ଡେରାକୋ । କରିବ୍ ଦୋ ମାଇଲ । ରୋଟୀ ଗୋସ୍ ଖାଇ ଖଟିଆମେ ଶୋଇଲେବେ । ସବେରେ ମେରା ଲଡ଼କା ଜଙ୍ଗଲରୁ ଫେରିବ । ତା'ର ଫିଆଟ୍ ଗାଡ଼ି ଅଛି । ଏ ଗାଡ଼ିର ସବ୍ ବାତ୍ ତାକୁ ମାଲୁମ ଅଛି । ସବ୍ ଠିକ କରିଦେବ । ମଜାସେ ଗାଡ଼ି ଲେକେ ଚ୍ଲିଯିବେ । କ୍ୟା, ମଞ୍ଜୁର ନା ?" ମୋ ପିଠି ଥାପୁଡ଼େଇଦେଇ ସେଇ ହୋ ହୋ ହସ ।

ତା'ହେଲେ ଗାଡ଼ି ଠିକ୍ ହୋଇପାରିଲା ନାହିଁ । ନିମନ୍ତ୍ରଣ କରୁଛି ଏଇ ବୁଢ଼ା ବେୟାଦବ୍ ଡ୍ରାଇଭର ତା' ଡେରାରେ ରୋଟୀ ଗୋସ୍ ଖାଇ ରାତ କଟାଇବାକୁ । କଣ୍ଠରେ ଉସ୍ମା ଓ ନୂଆ ଚାକିରିରୁ ଆମଦାନି କରିଥିବା କିଛି ହାକିମି ମିଶାଇ ସର୍ଦ୍ଦାରକୁ ଶୁଣାଇଲି, ମୋତେ ତା ଟ୍ରକରେ ହେଡକ୍ୱାଟର ପହଞ୍ଚାଇଦେବାକୁ କେତେ ଭଡ଼ା ଲାଗିବ ? ହିପ ପକେଟରେ ମନିବେଗ ଆଡ଼େ ହାତ ବଢ଼ାଇଲି ।

ସର୍ଦ୍ଦାରଜୀର ମୁହଁରେ କୌତୁକ ଲାଗିରହିଛି । ଯେମିତି ଗୋଟାଏ ବଡ଼ ମଜା ଉପଭୋଗ କରୁଛି ସେ । କହିଲା, "ମାନ୍‌ଲିଜୀୟେ, ହାମ୍ ଆପ୍‌କୋ ଟ୍ରକ୍‌ମେ ନେଇଗଲି; ଲେକିନ୍ ଆପକା ଗାଡ଼ିର କ'ଣ ବନ୍ଦୋବସ୍ତ କରୁଛନ୍ତି ? ଏ ତୋ ବତାଇୟେ ।"

ତାକୁ ସମଝାଇଦେଲି, କାଲି ସକାଳେ ମୋର ଫ୍ରେଣ୍ଡର ଗାଡ଼ିରେ ମେକାନିକ୍ ଆଣି ଗାଡ଼ି ଠିକ୍ କରି ନେଇଯିବି । ଆଜି ରାତିରେ ପହଞ୍ଚିବାଟା ହେଲା ଅସଲ କଥା । ଯେତେ ଭଡ଼ା ଲାଗିବ ଦେବାକୁ ପ୍ରସ୍ତୁତ ଅଛି । ଖାଲି ମେହେରବାନି କରି ସେ ନେଇଯାଇପାରିଲେ....

ସର୍ଦ୍ଦାର କହିଲା, "ଠିକ ହେ, ଠିକ ହେ । ଲେକିନ ହିସାବ ତୋ ଯୋଡ଼ୀୟେ । ଯାନେ ଆନେକା ମେରା ଟ୍ରକ୍‌କା ଭଡ଼ା, କାଲ୍ ଆପଣଙ୍କ ଫ୍ରେଣ୍ଡକା ଗାଡ଼ି

ପାଇଁ କରିବ୍ ଏକଶୋ ମାଇଲକା ପେଟ୍ରୋଲ, ମେକାନିକ ଗ୍ରରଜ—ଗତଭରର ଏ ପିଅନ ବେଗ୍ରର ଗାଡ଼ିମେ ଭୁକା ବସି ରହିବ । ମେରା ଡେରାକୁ ଯାନେସେ ଆପ୍‌କା କୋଇ ତକଲିଫ୍ ହେବ ନାହିଁ । ବେଗର ଖର୍ଚ୍ଚାମେ ମଜାସେ ଗାଡ଼ି ଲେକେ କାଲ୍ ସବେରେ ଗ୍ରଲିଯିବେ । ମାଫ୍ କରିବେ ବାବୁ ସା'ବ୍ ! ବିବିଜୀ ତୋ ଘରମେ ହି । କାହା ଭଗିଯିବେ ନାହିଁ । ଏକ ଗତକା ସବାଲ୍ ।"

କ'ଣ କହି ବୁଝାଇବି ମୋର ହୃଦୟର ସମ୍ବାଦ ଏ ସ୍ଥୂଳବୁଦ୍ଧିସଂପନ୍ନ ବପୁବନ୍ତ, ଟଙ୍କା-ଅଣା-ପାହି ହିସାବକରା ବୁଢ଼ା ଡ୍ରାଇଭରକୁ ? ଏକ୍ ଗତ୍‌କା ସବାଲ୍—ହୁଁଃ ! ଏତେ ଦୁଃଖରେ ବି ହସ ଲାଗିଲା ।

ମୁହଁ ବୁଲାଇନେଇ ଫୁଲି ଫୁଲି ଦୀର୍ଘଶ୍ୱାସ ଛାଡ଼ିଲି । ସର୍ଦ୍ଦାରର କଣ୍ଠରେ ଏଥର ଆଉ କୌତୁକ ରହସ୍ୟ ନାହିଁ । ଧୀର ଗମ୍ଭୀର ଗଳାରେ ସେ କହିବାକୁ ଆରମ୍ଭ କଲା :

"ଏକ୍ ବାତ କହୁଁ, ବାବୁଜୀ, ବୁରା ନା ମାନେଗା । ନୟା ଗାଡ଼ି କ୍ୟା ପୁରାନା ଗାଡ଼ି କ୍ୟା ! ସବ ମସିନ୍‌ମେ ଗଡ଼ବଡ଼ ହେବା ମାମୁଲି ବାତ୍ । ଏ ତୋ ମସିନ୍‌କା ଢଙ୍ଗ୍ । ଆପ୍ ଗତ୍‌ମେ ଗାଡ଼ି ଚଲାଉଛନ୍ତି । ଇଞ୍ଜିନର କୋଇ ଖବର ଆପକୋ ମାଲୁମ ନାହିଁ । ସାଥ୍‌ମେ ଏକ ବତୀ ବି ନାହିଁ । ଖାଲି ଇଷ୍ଟିଅରିଂ ପକଡ଼ନେସେ କ୍ୟା ହୋଗା ? ବନେଟ୍‌କା ଭିତର କଣ କଣ ଅଛି ଆପ୍ ଜାଣନ୍ତି ନାହିଁ । ଗାଡ଼ି ଜଖମ୍ ହେଲେ ତାକୁ ସୁଧାରି ନେବାକୁ ହେବ । ମୁଁ ଦେଖୁଛି, ଆପ୍ ଘଣ୍ଟାଭର ଖାଲି 'ଭଗବାନ ଭଗବାନ' କରୁଛନ୍ତି । ନିଜର ଖିଲାପକୁ ମାନି ନ ନେଇ ବିଗ୍ରା ଭଗବାନକୋ ପୁକାରନେ-ସେ କ୍ୟା ହୋଗା, ବାବୁଜୀ ?

"ମୁଁ ସବ୍ ସମୁଝୁଛି, ବାବୁଜୀ ! ବିବିଜୀକି ସାଥ୍ ମିଲ୍‌ନେକେ ଲିୟେ ଆପ୍ ପରିସାନ ହେଉଛନ୍ତି । ଆପ୍‌କା ଦିଲକା ଦରଦ୍ ହାମ୍ ସବ୍ ସମଝୁଛି ।..ହାମ୍ ବି ଜଓ୍ୱାନ୍ ଥିଲା । ବିବିଜୀକି ମୋହବତ୍ ମୋତେ ବି

ପାଗଲ ବନାଇଦେଇଥିଲା । ଏ ପଚ୍ଚାଶ ମାଇଲ କ୍ୟା, ଏକ୍ ରାତ୍‌ମେ ହାମ୍ ଦୋ ଶୋ ମାଇଲ ଘୋର ଜଙ୍ଗଲରେ ଟ୍ରକ ନେଇଯାଇଛି ବିବିଜୀକୁ ଦେଖିବାପାଇଁ । ମେରା ଉମର ଅଭି ଷାଠ୍ । ଜିନ୍ଦଗୀକୁ ଯେତେ ଦେଖିଛି, ଯେତେ ମୋହବତ୍ କରିଛି, ଉସ୍‌ମେସେ ଏ ସମଝିଛି ଯେ ମୋହବତ୍ କୋଇ ଲଜୁକ୍ ଚିଜ୍ ନେହିଁ । ପଥରକା ତରହ ଖରି ନିଦା ଚିଜ୍ ମୋହବତ୍ । ମୋହବତ୍ କରିବାପାଇଁ ଦରକାର ଦିଲ୍‌ମେ ତାକତ୍, ଶରୀରମେ ତାକତ୍ ।"

"ଏକ ଘଣ୍ଟାମେ ହାମ ଆପ୍‌କୋ ଘର ପହୁଞ୍ଚାଦେଇପାରେ । ଭଡ଼ା ଦରକାର ନାହିଁ । ବିବିଜୀକୁ ମିଳି ଆପ୍‌କା ମନ ଆନନ୍ଦ ହୋଇଯିବ । ବିବିଜୀ ଭରି ଖୋସ୍ ହୋଇଯିବେ । ରାତ୍ ଭର ଆନନ୍ଦ କରିବେ । ଲେକିନ୍ ରାତ୍ ଭୋର ହୋଇଯିବ, ନିଶା ଉତରିଯିବ । ତବ୍ ବିବିଜୀ ଆପ୍‌କୋ ପୁଛେଗୀ, 'ଗାଡ଼ି କାହିଁ ? ଯଦୁଆ କାହାଁ ।?' ଆପ୍ କହିବେ, 'ଗାଡ଼ି ଆଉ ଯଦୁଆକୁ ମଝିରାସ୍ତାରେ ଅଧାରାତିରେ ଛାଡ଼ିଦେଇ ଏକ ବୁଢ଼ା ଟ୍ରକ ଡ୍ରାଇଭରକୁ ଡବଲ ଭଡ଼ା ଦେଇ ରାତାରାତ୍ ଚାଲିଆସିଲି ତୁମକୁ ଦେଖିବାପାଇଁ ।' ହୁଏତ ବିବିଜୀ ଖୋସ ହୋଇଯିବେ, ଆପ୍‌କୋ ତାରିଫ କରିବେ । ଲେକିନ୍ ଯବ ହୋସ୍ ଆସିବ ବିବିଜୀ ଆପ୍‌କୋ ଏକ ଦୁବ୍‌ଲା ପତ୍‌ଲା ଆଦମି ସମଝି ମନେ ମନେ ଦୟା କରିବେ । କରୁଣା କରିବେ । କରୁଣାସେ ମୋହବତ୍ ବନତୀ ନେହି, ବାବୁଜୀ ! ଔରତ୍ ତାର ପ୍ରେମିକଠାରୁ ଜ୍ୟାଦା କଣ ଚାହେଁ, ଜାଣିଛ ? ସେ ଚାହେଁ ତା'ର ମରଦ୍‌ର ଦେହରେ ଓ ଦିଲ୍‌ରେ ଶକ୍ତି, ତାକତ୍, ଯେ କି ତାକୁ ସବୁ ବିପଦରୁ ରକ୍ଷା କରିବ । ଜିନ୍ଦ୍‌ଗୀଭର ସେ ତାକୁ ଦେବ ଭରସା ଆଉର୍ ଆଶ୍ରୟ । ଯେଉଁ ଲୋକର ବାହୁରେ ବଳ ଅଛି, ମନରେ ସାହସ ଅଛି, ବାଧାବିଘ୍ନ ଆସିଲେ ପଛେଇ ନ ଯାଇ ଯିଏ ଆକ୍ରମଣ କରିବାକୁ ଯୁଦ୍ଧକୁ ଡେଇଁପଡ଼େ ସେ ଔରତର ମୋହବତ ପାଏ । ଔରତ ମୋହବତ କରେ ପୌରୁଷକୁ । ହାହୁତାଶ କରି ଛାତି ଚାପୁଡ଼ାଇ ଥିଏଟର କରାଯାଇପାରେ, ମୋହବତ୍ ନେହିଁ । ମାଫ୍ କିଜୀୟେ ବାବୁଜୀ, ଆପ୍ ତୋ ପଢ଼ାଲିଖା ଆଦ୍‌ମୀ ହେ-ହାମ୍ ତୋ ମୁରଖ ଡ୍ରାଇଭର ।"

ସର୍ଦ୍ଦାରଜୀ ହୋ ହୋ ହସିଉଠିଲେ । ମୋ ହାତକୁ ତାଙ୍କ ହାତ ଭିତରକୁ ଟାଣିନେଇ ମୋତେ ମୋ ଗାଡ଼ିପାଖକୁ ଆଣି, ଦୁଆର ଖୋଲି ଡ୍ରାଇଭର ସିଟ୍‌ରେ ବସାଇଦେଲେ । ତା'ପରେ ଦୁଆର ବନ୍ଦ କରି କହିଲେ, "ଷ୍ଟାର୍ଟ ଦିଜୀୟେ, ବାବୁସା'ବ୍ !"

ଯନ୍ତ୍ରଚାଳିତ ଏକ ଜଡ଼ ପଦାର୍ଥ ପରି ମୁଁ ଷ୍ଟାଟରଟାକୁ ଟାଣିଦେଲି । ଇଞ୍ଜିନ ଗର୍ଜିଉଠିଲା ।

"ବସ୍,ଯାଇୟେ ବାବୁସା'ବ, ଆପକୀ ଗାଡ଼ି ଠିକ୍ ହୋ ଗୟୀ, ବେଫିକର ଯାଇୟେ ।"

ଦୁଆର ଖୋଲି ବାହାରକୁ ଆସିବାକୁ ଚେଷ୍ଟା କରୁଥିଲି । ସର୍ଦ୍ଦାରଜୀ ଦୁଆରକୁ ଚପିଧରି ହସି ହସି କହିଲେ, "ଯାଇୟେ ବାବୁ ସା'ବ, ଦେରି ହୋଇଯାଉଛି । ଏ ବୁଢାକା ବାତ୍ ଖିଆଲ ରଖିବେ । ଗୁସ୍ତାକୀ ମାଫ୍ କିଜୀୟେଗା ।"

ଗିଅର ଦେଇ ଗାଡ଼ି ଛାଡ଼ିଲି । ଟ୍ରକ ପାଖକୁ ଯାଉ ଯାଉ ସର୍ଦ୍ଦାରଜୀ ମଙ୍ଗଲୁକୁ ହାଙ୍କିଲେ—

"ଚଲୋ ବେଟା ମଙ୍ଗଲୁ, ବହୁତ ଦେର୍ ହୋ ଗୟା । ଡେରାମେ ସର୍ଦ୍ଦାରିନ୍ ପରିସାନ ହୋତେ ହୋଙ୍ଗୀ ।"

# ଶେଷ ରାତିର ଅତିଥି

ଡାକବଙ୍ଗଳା ଗେଟ୍‌ରେ ପଶି ଦେଖେଁ ବଙ୍ଗଳା ଆଗରେ କା'ର ଗୋଟାଏ ବଡ଼ ଗାଡ଼ି, ବାରନ୍ଦାରେ ଟେବୁଲ ଉପରେ ଜ୍ୱଳନ୍ତ ପେଟ୍ରୋମାକ୍ସ । ହେଲା ଅବା ମୋର ଡେରି ହୋଇଯାଇଛି; ଦିନ ଦି'ଟାରେ ନ ପହୁଞ୍ଚି ସଞ୍ଜ ସାତଟାରେ ପହଞ୍ଚିଛି । ତା' ବୋଲି ସପ୍ତାହକ ଆଗରୁ ମୋ ନାଁରେ ରିଜର୍ଭ କରଯାଇଥିବା ସୁଟ୍ ଆଉ ଜଣେ ମାଡ଼ିବସିବ—ଏଟା ବରଦାସ୍ତ କରଯାଇ ନ ପାରେ । ଗାଡ଼ିରେ ବ୍ରେକ କଷି ଡାକ ଦେଲି "ଚୌକିଦାର" ଓ ଟର୍ଚ୍ଚ ପକାଇ ଖୋଜିନେଲି ନୋଟିସ୍ ବୋର୍ଡ଼ରେ ମୋ ନାଁରେ ରିଜର୍ଭ କରଯାଇଥିବା ନୋଟିସ । ସବୁ ଠିକ୍ ଅଛି; ଦୁଇଟା ସୁଟ୍‌ରୁ ଗୋଟାଏ ତ ମରମତି ହେଉଛି ଓ ଆରଟା ମୋର । ଏ ସବୁ ଚୌକିଦାରର ଫିସାଦ । ଅର୍ଦ୍ଧଦଗ୍ଧ ସିଗ୍ରେଟରେ ଘନ ଘନ ଟାଣ ଦେଇ ଅପେକ୍ଷା କରି ରହିଲି ଚୌକିଦାରକୁ ।

"କ୍ଷମା କରିବେ"—ଧୀର ସଂଯତ କଣ୍ଠ । ବୁଲି ଚାହିଁଲି । ବାରନ୍ଦା ତଳେ ଏକ ଭଦ୍ରଲୋକ—ଧଳା ଟ୍ରାଉଜର, ଧଳା ହାଫ ସାର୍ଟ, ଶ୍ୟାମ ବର୍ଣ୍ଣ, ଦୀର୍ଘାକୃତି, ମୁଖରେ ସୌଜନ୍ୟ, କଣ୍ଠରେ ପରିଚ୍ଛନ୍ନତା—"ମୋର ଏଇ ବର୍ବରତା କ୍ଷମା କରିବେ । ମୁଁ ଏଇ ଘଣ୍ଟାକ ପୂର୍ବରୁ ପହଞ୍ଚି ଦେଖିଲି, ବଙ୍ଗଳା ଆପଣଙ୍କ ନାମରେ ରିଜର୍ଭ କରାଯାଇଛି । ଫେରିଯାଉଥିଲି, କିନ୍ତୁ ଶୁଣିଲି ଯେ ଆପଣଙ୍କର ଦୁଇଟାବେଳେ ଆସିବାର ଥିଲା; ବୋଧହୁଏ ଆଜି ଆଉ ଆସିବେ ନାହିଁ ବୋଲି ଭାବି ରହିଯାଇଥିଲି । କିନ୍ତୁ ମୁଁ ବର୍ତ୍ତମାନ ଚାଲିଯାଉଛି, ଆପଣଙ୍କର ହୁଏତ ଅସୁବିଧା ହେବ ।"

କହିଆସୁଥିଲି ନିଃସହାୟ ଭାବରେ କାନ୍ଧ ଦୋହଲାଇ, "କଣ ଆଉ କରିବା କୁହନ୍ତୁ, ଗୋଟାଏ ତ ସୁଟ୍ ।" କିନ୍ତୁ ଭଦ୍ରଲୋକଙ୍କର କଥା କହିବାର ଢଙ୍ଗ, ମାର୍ଜିତ କଣ୍ଠ, ସୁସ୍ଥ ଦୀର୍ଘ ଆକୃତି, ଏପରିକି ତାଙ୍କର ଠିଆ ହେବାର ଭଙ୍ଗୀରେ କିପରି ଗୋଟାଏ ମୌନ ଆଭିଜାତ୍ୟ ମୋତେ ଛୁଇଁଗଲା । ନିଜକୁ ନିଜେ କହୁଥିବାର ଶୁଣିଲି, "ଅସୁବିଧା ଆଉ କଣ ? ଖରାଦିନ ରାତି, ଯେଉଁ ଗରମ, ସମସ୍ତେ ତ ବାହାରେ ଶୋଇବା । ରାତିଟାରେ କେଉଁଆଡ଼େ ଆଉ ଯିବେ ? ତା'ଛଡ଼ା ଏଠ ଏଇ ନିଛାଟିଆ ବଙ୍ଗଳାରେ ଆପଣଙ୍କ ଭଳି ଜଣେ ସଙ୍ଗୀ ମିଳିଛନ୍ତି—ଏ ତ ଆନନ୍ଦର କଥା....

ଚୌକିଦାର ଆସି ଗାଡ଼ିରୁ ବେଡ଼ିଂପତ୍ର ଉତାରିଲା । ଭଦ୍ରଲୋକ ନିମନ୍ତ୍ରଣ କଲେ, ମୋର ଯଦି ଆପତ୍ତି ନ ଥାଏ ତାଙ୍କ ସଙ୍ଗେ ବସି ଟିକେ ଚା' । ମୁଁ ଧନ୍ୟବାଦ ଦେଇ ତାଙ୍କୁ ଅନୁସରଣ କରି ଚାଲିଲି । ବଙ୍ଗଳାର ଏକ ପଟରେ ଦୁଇଖଣ୍ଡ ଇଜି ଚେୟାର, ଖଣ୍ଡିଏ ଟେବୁଲ ଉପରେ ଟେବୁଲ୍‌କ୍ଲଥ ପବନରେ ଅସ୍ଥିର ହୋଇ ଉଡ଼ୁଛି, ତା'ଉପରେ ଗୋଟାଏ ଛୋଟ ଚେପଟା ବୋତଲ, ଯୋଡ଼ିଏ ଗ୍ଲାସ, ଏସ୍‌ଟ୍ରେରେ ସିଗାର ପୋଡ଼ିଯାଉଛି । ଚେୟାର ଟାଣି ବସିଲି । ଭଦ୍ରଲୋକ ବିନୀତ ଭାବରେ ପଚାରିଲେ ଜୀନରେ ମୋର ଆପତ୍ତି ଅଛି କି, ନଚେତ ସ୍କ୍ୱାସ, ନା ଚା' ? ଜୀନରେ ଆଦୌ ଆପତ୍ତି ନ ଥିଲେ ବି ଟିକେ ଚା' ପାଇଁ କଣ୍ଠ ଶୁଖିଯାଉଥିଲା; ଅତଏବ କହିଲି, "ଚା" । ଭଦ୍ରଲୋକ ପାଖଘର ପରଦା ଭିତରକୁ ଉଠିଗଲେ ।

ଘରିଆଡ଼ ଜହ୍ନ ଆଲୁଅରେ ଝଲମଲ କରୁଛି; ଦୂରରେ ପାହାଡ଼ର ବାଡ଼ । ଖୁବ୍ ଦୂରରେ ପାହାଡ଼ ଯେଉଁଠି ଛିଡ଼ିଯାଇଛି ସେଠି ଉଙ୍କି ମାରୁଛି କେଉଁ ଅଜଣା ନଈର ବାଲିଶେଯ । ମଝିରେ ଟାଙ୍ଗର ଭୂଇଁ । ଅସମତଳ ଜମିର ଢେଉ ସ୍ତରେ ସ୍ତରେ ଦୂରକୁ ଦୂରକୁ ଲମ୍ବିଯାଇଛି । ଟେବୁଲ ଉପରେ ଚକ୍ ଚକ୍ ଗ୍ଲାସ୍, ଚପ୍‌ଚା ମଧୁର ଗନ୍ଧ । ପରିବେଶଟି ବେଶ୍ ସୁନ୍ଦର ଓ ମନଗ୍ରାହୀ । ଗ୍ଲାସ ଭିତରର ତରଳ ପଦାର୍ଥ ଆଡ଼େ ଗ୍ହୁଁ ଗ୍ହୁଁ ମନେହେଲା ଯେପରି ଦୁଇଟି ଗ୍ଲାସର ଆଧେୟ ପୃଥକ ରଙ୍ଗର । ଗୋଟାକରେ ଜୀନ୍, ଅନ୍ୟଟିରେ, ଯେଉଁଟି ମୋର ନିକଟବର୍ତ୍ତୀ, ସେଥିରେ ଜୀନ୍ ନୁହେଁ । ବୋଧହୁଏ ଭଦ୍ରଲୋକ ମୋ ପାଇଁ ଯାହା ପ୍ରସ୍ତାବ କରୁଥିଲେ, ସ୍କ୍ୱାସ.... । ତା'ହେଲେ ଭଦ୍ରଲୋକ ଏକାକୀ ନୁହନ୍ତି ଓ ଯେଉଁ ଜଣକ ତାଙ୍କ ସାଙ୍ଗରେ ଅଛନ୍ତି ସେ ଜୀନ୍ ପରିବର୍ତ୍ତେ ସ୍କ୍ୱାସ୍ ବା ସୋଡ଼ା ବା....

ଭଦ୍ରଲୋକ ଫେରିଆସିଲେ ଓ ଚେୟାରରେ ନିଜକୁ ସଜାଡ଼ିନେଇ ବସି ଆରମ୍ଭ କଲେ, "ଏଇ ବଙ୍ଗଳାଟି ବାସ୍ତବିକ ଭରି ସୁନ୍ଦର । କେବଳ ଲୋଭ ସମ୍ଭାଳି ନ ପାରି ପ୍ରାୟ ଅନଧିକାର ଚର୍ଚ୍ଚା କରିବସିଥିଲି । ଆପଣ ଆଗରୁ ଏଠାକୁ କେବେ ଆସିଥିଲେ ?"

କ୍ରମେ କଥାବାର୍ତ୍ତା ଜମିଆସିଲା । ଗ୍' ଆସିଲା, ବିସ୍କୁଟ, ସେଣ୍ଡଉଇଚ୍ । ସୁନ୍ଦର ଟ୍ରେ, ସୁନ୍ଦର ସେଟ୍, ଦାମିକା ଟ୍ରୁଟ । ଅପରିଚୟର ଆବରଣ କ୍ରମେ ଖସିପଡ଼ିଲା । ମନେ ହେଲା ଯେପରି ଆମେ ବହୁକାଳର ପରିଚିତ । ଜାଣିଲି, ଭଦ୍ରଲୋକ ଜଣେ ଉଚ୍ଚପଦସ୍ଥ ରେଲଓୟେ କର୍ମଗ୍ରୀ । ବହୁକାଳ ହେଲା ଓଡ଼ିଶାରେ ଅଛନ୍ତି । ଓଡ଼ିଶା ତାଙ୍କୁ ଭରି ଭଲ ଲାଗିଛି । ଓଡ଼ିଶାର ପ୍ରାକୃତିକ ଦୃଶ୍ୟ, ବନ, ଜଙ୍ଗଲ, ପାହାଡ, ଚିଲିକା, କୋଣାର୍କ ତାଙ୍କୁ ମୁଗ୍ଧ କରିଛି । ଦୁଇ ଦୁଇଟା ପ୍ରମୋସନ ଛାଡ଼ିଛନ୍ତି; କିନ୍ତୁ ଓଡ଼ିଶା ଛାଡ଼ିପାରୁନାହାନ୍ତି । ସେ ବିବାହିତ, ତାଙ୍କର ଗୋଟିଏ ଘରିବର୍ଷର ଶିଶୁ କନ୍ୟା—ସମସ୍ତେ ହେଡ୍‌କ୍ୱାଟର୍‌ସରେ ଅଛନ୍ତି । ସେ ଉଇକ୍‌ଏଣ୍ଡରେ ଏ ଅଞ୍ଚଳ ବୁଲିବାକୁ ବାହାରିଥିଲେ । ରାସ୍ତାରେ ଯାଉଁ ଯାଉଁ ଏଇ ବଙ୍ଗଳାରେ ସେ ଅଟକିଯାଇଛନ୍ତି ।

ଆଗ୍ରହ ବଢ଼ିଯାଉଛି; ଭଦ୍ରଲୋକଙ୍କୁ ଘେରି କିପରି ଏକ ପ୍ରଚ୍ଛନ୍ନ ରହସ୍ୟ ଉଙ୍କି ମାରୁଛି । ମୁଣ୍ଡରେ ଲମ୍ବା କଳା ବାଳ ଜହ୍ନ ଆଲୁଅରେ ଚିକ୍ ଚିକ୍ କରୁଛି; ଘନ ଭ୍ରୂତଳେ ସୁନ୍ଦର ଆୟତ ଚକ୍ଷୁରେ କିପରି ଏକ ସ୍ୱପ୍ନ-ବିଳାସ । ସମସ୍ତ ମୁଖରେ ଏକ ଅପୂର୍ବ ଶ୍ରୀ ଯାହା ଭୁଲ କରି ହୁଏ ନାହିଁ । ଭିତରର ପରିଚ୍ଛନ୍ନତା ଓ ସତତା ମନ ଯେପରି ଦେଖିଲାମାତ୍ରେ ଗ୍ରହଣ କରିନିଏ, ଏପରି ଲୋକ ସହିତ ପ୍ରଥମ ପରିଚୟ ଗଭୀର ପରିଚୟରେ ପରିଣତ ହୁଏ—ସେଥିପାଇଁ ସମୟ ଲାଗେ ନାହିଁ, ଚେଷ୍ଟା ଦରକାର ହୁଏ ନାହିଁ ।

ଘଡ଼ିରେ ଦେଖିଲି ୯ଟା । ବାଥ୍‌ରୁମରେ ପାଣି ଅଛି କି ବୋଲି ପଚାରିବାରୁ ଭଦ୍ରଲୋକ ଚମକିଲା ପରି ହଠାତ୍ ଚେୟାର ଛାଡ଼ି ଉଠିପଡ଼ି ଘରଭିତରକୁ ଗଲେ । ବାଥ୍‌ରୁମର ଦରଜା ଖୋଲିଗଲା । ଭିତରପଟୁ କବାଟଟା ବନ୍ଦ କରିବାର ଶବ୍ଦ ଶୁଣିଲି । ମୋର ବିଛଣାପତ୍ର, ସୁଟକେସ୍ ବସିବାଘରେ ପଡ଼ିରହିଛି । ଭଦ୍ରଲୋକ ଯେଉଁ ଘରେ ଅଛନ୍ତି ସେ ଘରର ଦରଜା ଭିତରପଟୁ ବନ୍ଦ । ବାଥ୍‌ରୁମକୁ ବାହାର ଦରଜା ଦେଇ ପଶିଲି ଓ ଗାଧୁଆ ପାଧୁଆ ସାରି ଲୁଗା ବଦଳାଇ ବାହାରକୁ ଆସି ଦେଖେ ଭଦ୍ରଲୋକ ଆଖି ବୁଜି ଚେୟାରରେ ନୀରବ ହୋଇ ପଡ଼ିରହିଛନ୍ତି । ଟେବୁଲ ଉପରର ବୋତଲ ପ୍ରାୟ ଶେଷ ହୋଇଆସିଛି । ପବନରେ ଜୀନ୍‌ର ଗନ୍ଧ । ଭଦ୍ରଲୋକ ହୁଏତ ଶୋଇପଡ଼ିଛନ୍ତି ।

ଖାଇସାରି ଖୋଲା ପଡ଼ିଆରେ ଖଟିଆ ପକାଇ କେତେବେଳେ ଶୋଇ-ପଡ଼ିଥିଲି, ନିଦ ଭାଙ୍ଗିଗଲା । ମଝି ଆକାଶରେ ଚନ୍ଦ୍ର । ସବୁଆଡ଼ ନିସ୍ତବ୍ଧ । ପବନ ବନ୍ଦ ହୋଇଯାଇଛି । ମଝିରେ ମଝିରେ ଘାସ ଉପରେ ଚପଲର ଆୱାଜ ବାଜିଉଠୁଛି । ଖଟିଆରେ ଉଠିବସି ଚାରିଆଡ଼କୁ ଚାହିଁଲି । ପଡ଼ିଆରେ ଏପଟ ସେପଟ କିଏ ଚାଲଫେରା କରୁଛି । ଚିହ୍ନିଲି, ସେଇ ଭଦ୍ରଲୋକ । ପାଇପରେ ନିଆଁ ଚେଇଁ ଉଠିଛି । ଅସ୍ଥିର ପଦରେ ସେ ଘୂରଫେରା କରୁଛନ୍ତି । କୌତୂହଳ ହେଲା । ଉଠି ତାଙ୍କଆଡ଼େ ଚାଲିଲି । ଭଦ୍ରଲୋକ ମୋତେ ଦେଖି କେମିତି ଟିକେ ଚମକିଉଠିଲେ ଓ ଶୁଷ୍କ ଗଳାରେ ପଚାରିଲେ,

"ଆପଣ ଶୋଇନାହାନ୍ତି ?" ମୁଁ ଭଦ୍ରଲୋକଙ୍କୁ ନିରୀକ୍ଷଣ କରି ଗ୍ଳହିଁଲି ଓ ହସି ହସି କହିଲି, "ଆଉ ଆପଣ ?" ଭଦ୍ରଲୋକ ଅପ୍ରତିଭ ହେଲାପରି କହିଲେ "ଓ, ମୁଁ ? ଦେଖନ୍ତୁ, ମୁଁ ଶୋଇପାରୁନାହିଁ, ମାନେ....ନିଦ ହେଉନାହିଁ । ଯୁ ଗରମ ! ଆଚ୍ଛା, କେତେଟା ବାଜିଲା ?"

ଘଡ଼ି ହାତରେ ନ ଥିଲା । ଅନ୍ଦାଜ କରି କହିଲି, "ଏଇ ପ୍ରାୟ ଗୋଟାଏ ହେବ ।"

"ଗୋଟାଏ ?" ଭଦ୍ରଲୋକଙ୍କ କଣ୍ଠରେ କେମିତି ଗୋଟାଏ ଆତଙ୍କ— "ଗୋଟାଏ....ତା' ମାନେ, ଗଡି ଆଉ ସାଢ଼େ ତିନି ଘଣ୍ଟା ବାକି.... ଠିକ୍ ନା ?"

"ହଁ, ସେୟା ହେବ ।" କଣ୍ଠରେ ଏକ ପ୍ରକାର ଘନିଷ୍ଠତା ଓ ସହାନୁଭୂତି ଫୁଟାଇ କହିଲି, "ଆପଣ କାହିଁକି ଟିକେ ବିଚଳିତ ହେଲା ପରି ମନେ ହେଉଛନ୍ତି ? ମୁଁ କୌଣସି କାମରେ ଆପଣଙ୍କର ଲାଗିପାରିବି କି ?"

ଭଦ୍ରଲୋକ ଚୁପ୍ ହୋଇଗଲେ ଓ ତା'ପରେ ଗ୍ଳଲିବାକୁ ଆରମ୍ଭ କଲେ । ମୁଁ ବି ସାଙ୍ଗରେ ଗ୍ଳଲିଲି । ଯେଉଁଠି ସେହି ଇଜି ଚେୟାର ପଡ଼ିଥିଲା ସେଇଠାକୁ ଆସି ଭଦ୍ରଲୋକ କହିଲେ, "ବସନ୍ତୁ" ଓ ନିଜେ ଗୋଟିକରେ ଆଉଜି ବସି କହିଲେ, "ଦେଖନ୍ତୁ, ମୋର ଜଣେ ବନ୍ଧୁ ବଡ଼ ବିପଦରେ ପଡ଼ିଛନ୍ତି । ଆଜି ଏଇ ଗଡିଟା ତାଙ୍କର ଶେଷ ଗଡି । ଏଇ ଗଡି ଭୋର ହେବା ପୂର୍ବରୁ ତାଙ୍କୁ ଠିକ୍ କରିନେବାକୁ ହେବ । ତା' ନ ହେଲେ ସବୁ ଶେଷ......

କିଛି ବୁଝିଲି ନାହିଁ, ଶୂନ୍ୟକୁ ଗ୍ଳହିଁରହିଲି । ଭଦ୍ରଲୋକ ଝୁଙ୍କିପଡ଼ି ବୋତଲ ଖୋଲିଲେ—ଆଉ ଏକ ଜୀନ୍ ବୋତଲ । ନିଜ ଗ୍ଲାସରେ ଟିକେ ଢାଳିନେଲେ ଓ ଆଉ ଏକ ଗ୍ଲାସରେ ଟିକେ ଢାଳି ମୋ ଆଡ଼କୁ ଆଗେଇ-ଦେଇ କହିଲେ, "ଓ, କିଛି ବୁଝିଲେ ନାହିଁ, ନା ? କେମିତି ବୁଝିବେ, ଆପଣ ତ ଆଉ ସବୁ କଥା ଜାଣନ୍ତି ନାହିଁ....

ମନେ ମନେ ଠିକ୍‌କରିନେଲି, ଭଦ୍ରଲୋକଙ୍କଠାରୁ ସମସ୍ତ କଥା ବାହାର କରିବାକୁ ହେବ । ନିଜ ରିଜର୍ଭକରା ରୁମ୍ ଛାଡ଼ି ଏମିତି ବାହାରେ ପଡ଼ି-ରହିବା ପରିବର୍ତ୍ତେ ମିଳୁ ନା ଅନ୍ତତଃ ଗୋଟାଏ ଛୋଟ ଗଳ୍ପର ଖୋରାକ ! କଣ୍ଠରେ ଅକୃତ୍ରିମ ଉତ୍‌କଣ୍ଠା ଫୁଟାଇ କହିଲି, "କୁହନ୍ତୁ ନା, ଆପଣଙ୍କର ସେଇ ବନ୍ଧୁଙ୍କର କଥା....ତାଙ୍କୁ ନିର୍ଭୁଲ ସିଦ୍ଧାନ୍ତରେ ପହଞ୍ଚାଇବାକୁ କିଛି ଚେଷ୍ଟା ଓ ସାହାଯ୍ୟ ବି ତ ମିଳିପାରେ......

ଭଦ୍ରଲୋକ ଉତଫୁଲ୍ଲ ହୋଇଉଠିଲେ, "ସତେ ? ସତେ ? ଆପଣ ମୋର ବନ୍ଧୁଙ୍କୁ ସାହାଯ୍ୟ କରିପାରିବେ ? ଆପଣଙ୍କୁ ତ ମୁଁ ପ୍ରାୟ ଜାଣେ ନାହିଁ । ଅଥଚ ଆପଣଙ୍କର ଏଇ ଉଦାରତା, ଏଇ ଅଫର୍‌ରେ ମୁଁ ଅଭିଭୂତ ହୋଇଯାଉଛି । ଆଚ୍ଛା, କହୁଛି....

ଇଜି ଚେୟାରରେ ନିଜକୁ ବିସ୍ତୃତ କରି ସ୍ଥିର ଦୃଷ୍ଟି ଆକାଶଆଡ଼େ ରଖି ଆରମ୍ଭ କଲେ । ସେଇ ଧୀର ସଂଯତ କଣ୍ଠ ପୁଣି ଫେରିଆସିଛି; ସେଥିରେ ଉତ୍ତେଜନା ନାହିଁ —ଉତ୍ତାପ ନାହିଁ ।

"ବନ୍ଧୁ ମୋର ଜଣେ ଉଚ୍ଚପଦସ୍ଥ କର୍ମଚାରୀ, ସ୍ୱାସ୍ଥ୍ୟବାନ୍, ଚରିତ୍ରବାନ୍, ସୁନ୍ଦର, ସୁପୁରୁଷ । ବିବାହିତ; ଘରେ ପତିବ୍ରତା ସୁନ୍ଦରୀ ହିନ୍ଦୁ ସ୍ତ୍ରୀ—ଯାହାର ସ୍ୱାମୀହିଁ ଇହକାଳ ଓ ପରକାଳ । ପରସ୍ପର ମଧ୍ୟରେ ନିବିଡ଼ ଭଲ-ପାଇବା, ବୁଝାବୁଝି ଓ ମେଳ । ଚାରିବର୍ଷର ଗୋଟିଏ ସୁନ୍ଦର ଶିଶୁକନ୍ୟା ନେଇ ତାଙ୍କର ସଂସାର । ଘରର ସମସ୍ତ ଦାୟିତ୍ୱ ମମତା ହାତରେ ଛାଡ଼ି-ଦେଇ ବନ୍ଧୁ କାମରେ ନିଜକୁ ଭସାଇଦେଇଛନ୍ତି । ତାଙ୍କର କର୍ମନିପୁଣତାରେ ସମସ୍ତେ ମୁଗ୍ଧ । ସମାଜରେ ତାଙ୍କର ଉଚ୍ଚ ପ୍ରତିଷ୍ଠା । କାମରୁ ଅବସର ପାଇଲେ ଘରଆଡ଼େ ତାଙ୍କ ଗାଡ଼ି ଛୁଟେ । ଦୁଆରମୁହଁରେ ତାଙ୍କ ସ୍ତ୍ରୀ ମମତା ଅପେକ୍ଷା କରି ଠିଆ ହୋଇଥାନ୍ତି । ଛୋଟ ପିଲାଟି ପରି ଅଧୀର ଆଗ୍ରହରେ ବନ୍ଧୁ ଦୌଡ଼ିଯାଇ ମମତାର ହାତ ଧରନ୍ତି—ସାଙ୍ଗ ହୋଇ ଘରଭିତରକୁ ଯା'ନ୍ତି । ନିଜ ହାତରେ ପରିବେଷଣ କରି ମମତା ସ୍ୱାମୀଙ୍କୁ ଖୁଆନ୍ତି ।

ମମତାର କୋଳରେ ମୁଣ୍ଡ ରଖି ବନ୍ଧୁ ତୃପ୍ତିର ନିଶ୍ୱାସ ନିଅନ୍ତି । ସ୍ୱାମୀଙ୍କ ମୁଣ୍ଡବାଳରେ ହାତ ବୁଲଉ ବୁଲଉ ମମତା କେତେ କଥା କୁହନ୍ତି । ଲଗାଲଗି ଛୋଟ ଖଟରେ ବୁଲ୍‌ବୁଲ୍ ନିଦ ଭିତରେ କଣ ସ୍ୱପ୍ନ ଦେଖି ହସି ଉଠେ । ବନ୍ଧୁଙ୍କର ସଂସାରର ସୁଅ ସମତଳ ଭୂଇଁ ଉପରେ ଗଡ଼ିଗ୍ଲେ– ଦିନ କଟେ ।”

“ବନ୍ଧୁଙ୍କର କଲେଜ ସହପାଠୀ ଜମିଦାର ପୁତ୍ର ଅଜିତର ବାହାଘର । ଘନ ଘନ ଚିଠି ଓ ତାର ପାଇ ବନ୍ଧୁଙ୍କୁ ସେଇ ବିବାହରେ ଯୋଗ ଦେବା-ପାଇଁ ଯିବାକୁ ହେଲ୍ଲ ବହୁଦୂର । ମମତା ଯିବାର ସମସ୍ତ ବନ୍ଦୋବସ୍ତ କରିଦେଲ୍ଲ–ସୁଟକେସ୍, ଏଟେଚି, ବନ୍ଧୁ ଯେଉଁ ସିଗ୍ରେଟ ଖାଆନ୍ତି ସେ ସିଗ୍ରେଟରୁ ୫ଟିଣ, ଡବାରେ ମସଲ୍ଲ । କିନ୍ତୁ ଶେଷରେ ବନ୍ଧୁ ମମତାଠାରୁ ବିଦାୟ ନେଇ କାର୍‌କୁ ଉଠିଲ୍ଲବେଳେ ମମତାର ହାତ ଭିତରେ ଯେପରି ନିଜ ହାତ ଅଟକିଗଲ୍ଲ । ଏ କଣ ? ମମତାର ଆଖିରେ ଲୁହ !”

ଭଦ୍ରଲୋକ ଚୁପ୍ ହୋଇଗଲେ, ଯେପରି ତଣ୍ଟିରେ କ’ଣ ଅଟକିଗଲ୍ଲ । ଗ୍ଲାସ ଉଠାଇନେଇ କଣ୍ଠ ଓଦା କରିନେଲେ । ହଠାତ୍ ମନେହେଲ୍ଲ, ଭଦ୍ରଲୋକ ଓ ମୋ ଛଡ଼ା ଆଉ କେହି ଜଣେ ଯେପରି ସେଠି କେଉଁଠି ଅଛି । ତାର ଶରୀରୀ ବା ଅଶରୀରୀ ଉପସ୍ଥିତି ଯେପରି ସ୍ପଷ୍ଟ । ଗ୍ଲରିଆଡ଼କୁ ଗ୍ଲହିଁଲି । ଜହ୍ନ ଆଲୁଅରେ ଗ୍ଲରିଆଡ଼ ବୁଡ଼ିଯାଇଛି । କେଉଁଠି କିଛି ଶବ୍ଦ ନାହିଁ । ଭଦ୍ରଲୋକଙ୍କ ଘରର ପର୍ଦ୍ଦା ନିଶ୍ଚଳ ହୋଇ ଝୁଲୁଛି । ଭଦ୍ରଲୋକ କହିଗ୍ଲଲିଛନ୍ତି । ମୁଁ ଟିକେ ଯେପରି ଅନ୍ୟମନସ୍କ ହୋଇପଡ଼ିଥିଲି, ମୋର ମନେହେଲ୍ଲ, ମୁଁ ଯେପରି ଶୁଣିଲି କାହାର ଗୋଟାଏ ଚପା ଦୀର୍ଘଶ୍ୱାସ ।

ଭଦ୍ରଲୋକ କହିଗ୍ଲଲିଛନ୍ତି

“ବିବାହ କାର୍ଯ୍ୟ ସରିଲ୍ଲ । ଗଭୀର ରାତ୍ରି । ସମସ୍ତେ କ୍ଳାନ୍ତ ହୋଇ ଶୋଇ-ସାରିଲେଣି । କେତେକ ଘନିଷ୍ଠ ବନ୍ଧୁଙ୍କୁ ନେଇ ‘ଗାର୍ଡ଼େନ ହାଉସ୍’ରେ ଆୟୋଜନ କରାଯାଇଛି ନାଚ-ଗୀତ । ବନ୍ଧୁଙ୍କ ପ୍ରତି ସମସ୍ତଙ୍କର ଦୃଷ୍ଟି

ସଜାଗ । ଅଭ୍ୟର୍ଥନାରେ ବନ୍ଧୁ ମୁଗ୍‌ଧ । ଗୀତ ଗ୍ଲଲିଛି; ଉତ୍ତର ଭାରତରୁ ଫର୍ମାସକରା ତରୁଣୀ ବାଇଜୀର କଣ୍ଠସଙ୍ଗୀତରେ ବାୟୁମଣ୍ଡଳ ଆଚ୍ଛନ୍ନ । ପାନୀୟ ବୁଲୁଛି । ସିଗ୍ରେଟର ନୀଳ ଧୂଆଁ କୁଣ୍ଡଳୀ କରି ଧୀରେ ଧୀରେ ଉପରକୁ ଉଠୁଛି । ବାଇଜୀର ସ୍ଫଟିକ କପୋଳରେ, କର୍ଣ୍ଣଫୁଲରେ ଓ ପାନୀୟ ଗ୍ଲାସରେ ନାନାବର୍ଣ୍ଣର ବିଜୁଳି ଆଲୁଅ ପ୍ରତିଫଳିତ ହେଉଛି ।”

“ମଞ୍ଚ ଉପରେ ପର୍ଦ୍ଦା ଉଠିଲାବେଳକୁ ଦେଖାଗଲା. ଏକ ତପୋବନର ଦୃଶ୍ୟ । ଶିଳାଖଣ୍ଡ ଉପରେ ଗୋଟିଏ ତରୁଣୀ—ଶକୁନ୍ତଳା । ବିରହିଣୀ ଋଷିକୁମାରୀର ଅଙ୍ଗରେ ଗେରୁଆ ପରିଧାନ । ଉନ୍ମୁକ୍ତ ସ୍କନ୍ଧ ଓ ବାହୁମୂଳରେ ଅପୂର୍ବ ଲାବଣ୍ୟ । ଚକ୍ଷୁରେ ପ୍ରେମିକର ଆଗମନ ପ୍ରତୀକ୍ଷା ପରିସ୍ଫୁଟ । ଗଭୀର ବନ ମଧ୍ୟରେ ଅପସୃୟମାନ ପଥ ଦିଗରେ ତାଙ୍କର ଦୃଷ୍ଟି ଘନ ଘନ ଫେରି-ଯାଉଛି....ସେତାରରେ କରୁଣ ମୂର୍ଚ୍ଛନା........

“ବନ୍ଧୁ ତକିଆରେ କହୁଣି ଠେସ ଦେଇ ନିର୍ନିମେଷ ଦୃଷ୍ଟିରେ ଗ୍ଲହିଁ ରହିଛନ୍ତି । ତା’ ପରେ ଶକୁନ୍ତଳାର ବିରହ ନୃତ୍ୟ । ମୁଁ ଠିକ୍ ବର୍ଣ୍ଣନା କରି-ପାରିବି ନାହିଁ ସେ ନୃତ୍ୟ । ଯାହା ମୁଁ ବନ୍ଧୁଙ୍କଠାରୁ ଶୁଣିଛି, ସେପରି ଦୃଶ୍ୟ ଭାଷା ଦେଇ ବର୍ଣ୍ଣନା କରାଯାଇପାରେ ନାହିଁ । ଅନ୍ତରରେ ତା’ ଅନ୍ଦୋଳନରେ ପ୍ରବେଶ କରେ—ରକ୍ତ ହୋଇ ଶିରା ପ୍ରଶିରାରେ ମିଶିଯାଏ.... ଅପୂର୍ବ, ଅପାର୍ଥିବ ସେ ଅନୁଭୂତି । ସେତାର ଓ ବଂଶୀରେ ବେହାଗ ମୂର୍ତ୍ତ ହୋଇଉଠିଛି....ଆଉ ଶକୁନ୍ତଳାର ଅଙ୍ଗେ ଅଙ୍ଗେ ଫୁଟିଉଠିଛି ପ୍ରାଣର ଅନନ୍ତ ବେଦନା । ବନ୍ଧୁଙ୍କର ଛାତିତଳେ କିପରି ଗୋଟାଏ ଅଣନିଶ୍ୱାସିଆ ଭାବ....ଏକ ଅଭୂତପୂର୍ବ ଆତଙ୍କ । ଲୁମମୂଳ ଟାଙ୍କୁରି ଉଠୁଛି, ଆଖିପତା ଓଦା । ଦେହ, ମନ, ସମଗ୍ର ଚେତନା, ସକଳ ଅନୁଭୂତି, ସମୁଦାୟ ଜୀବନ ଉତ୍ସର୍ଗ କରି ଶକୁନ୍ତଳାର ପ୍ରତୀକ୍ଷା ଆବେଦନ କରୁଛି ଏଇ ଯେ ନର୍ତ୍ତକୀ—ଏ କ’ଣ ତାର ଅନୁଭୂତ-ବସ୍ତୁ ? ଏ କିପରି ସେ ସମ୍ବାଦର ସନ୍ଧାନ ପାଇଲା ? ଏ ତ ଗତାନୁଗତିକ ଛନ୍ଦ-ମୁଦ୍ରାସମ୍ବଳିତ ନୃତ୍ୟଗ୍ଲତୁରୀ ନୁହେଁ । କିଏ ଏହି ବାଳିକା? ଏ କିଏ ? ସବୁଜ ଆଲୁଅରେ ପ୍ରତି ଅଙ୍ଗ ଅଜସ୍ର ଭାଷାରେ ପ୍ରଗ୍ଲର

କରୁଛି ସେଇ ଏକ ସମ୍ବାଦ—ଅନାଗତ ପ୍ରେମିକର ପଦମୂଳରେ ନିଜକୁ ନିଃସ୍ୱ କରି ଉତ୍ସର୍ଗ କରିବାର ସମ୍ବାଦ—ପଦର ନୂପୁରରେ, ଶୁଭ୍ର ନଗ୍ନ ବାହୁର ସଂପ୍ରସାରଣରେ, ଗ୍ରୀବାର ଚଳନରେ ଓ ଚକ୍ଷୁଯୁଗଳର ପ୍ରାନ୍ତେ ପ୍ରାନ୍ତେ ଫୁଟିଉଠିଛି ଏକ ମୌନ କାରୁଣ୍ୟ, ଏକ ଶାନ୍ତ ଆବେଦନଶୀଳତା ।"

"ବାଃ, ବାଃ, ବନ୍ଧୁଙ୍କର ମନତଳେ ପ୍ରତିଧ୍ୱନିତ ହୋଇଉଠୁଛି । ଠିକ୍ ଏୟା ଯେପରି ସେ ମନେ ମନେ ବହୁଦିନରୁ ଖୋଜୁଥିଲେ । ଠିକ୍ ଏଇ ଅଙ୍ଗ, ଏଇ ଆଖି, ଏଇ ଧ୍ୱନି, ଏଇ ସ୍ୱପ୍ନ ଯେପରି ସେ ପ୍ରତି ମୁହୂର୍ତ୍ତରେ ମନର ଅନ୍ଧକାର ମଧ୍ୟରେ ଦେଖିଆସିଛନ୍ତି । ବନ୍ଧୁଙ୍କର ଚିତ୍ତ ଉତ୍‌ଫୁଲ୍ଲ, ହୃଦୟ ପରିପୂର୍ଣ୍ଣ......ପର୍ଦ୍ଦା ପଡ଼ିଲା ।"

"ତା'ପରେ ବନ୍ଧୁ ଫେରିଆସିଲେ । କିନ୍ତୁ କେଉଁଠି ଯେମିତି କ'ଣ ଘଟିଯାଇଛି । ମମତାର ହାତ ଭିତରେ ହାତ ରଖି ସେ ଯେପରି ଅନ୍ୟମନସ୍କ ହୋଇପଡ଼ିଲେ । ରାତିରେ ବିଛଣାରେ ମମତା ପାଖରେ ନିର୍ବାକ୍ ହୋଇ ପଡ଼ିରହିଲେ । ସ୍ୱପ୍ନର କୁହେଳି ଭିତରେ ଦେଖିଲେ ନୃତ୍ୟରତା ସେଇ ତରୁଣୀର ଆବେଗମୟ ଅଙ୍ଗଭଙ୍ଗୀ । ନିଦ ଭାଙ୍ଗିଯାଏ । ଉଠିବସି ଦେଖନ୍ତି, ମମତା ତାଙ୍କ ଛାତି ଉପରେ ମୁଣ୍ଡ ରଖି ଶୋଇପଡ଼ିଛି । ମୁହଁରେ ସେଇ ଶିଶୁର ସରଳତା, ବିଶ୍ୱାସ, ନିର୍ଭର । ତା'ର କପାଳ ଉପରୁ ବାଳ ସଜାଡ଼ି ଦେଉଁ ଦେଉଁ ବନ୍ଧୁ ପୁଣି ଅନ୍ୟମନସ୍କ ହୋଇଯାଆନ୍ତି, ପୁଣି ଶୋଇବାକୁ ଚେଷ୍ଟା କରନ୍ତି । ନିଦ ହୁଏ ନାହିଁ । ଆକାଶରେ ପୁଞ୍ଜ ପୁଞ୍ଜ ତାରା । ଖୋଲା ଝରକାରେ ସେଆଡ଼େ ଚାହିଁ ବନ୍ଧୁ ସିଗ୍ରେଟ ଧରାଇ ବସନ୍ତି । ରାତି ପାହିଯାଏ ।"

"ତା'ପରେ ବନ୍ଧୁ ପୁଣି ଜମିଦାରପୁତ୍ର କଲେଜ ସହପାଠୀ ଅଜିତ୍ ଘରକୁ ଆସନ୍ତି । 'ଗାର୍ଡ଼େନ ହାଉସରେ' ନୃତ୍ୟଗୀତର ପୁଣି ଆୟୋଜନ ହୁଏ । ବନ୍ଧୁଙ୍କର ବରାଦରେ ଶକୁନ୍ତଳାର ବିରହ ନୃତ୍ୟ ସେଇ ତରୁଣୀଟି ପୁଣି ପରିବେଷଣ କରେ । ବିହ୍ୱଳ ଦୃଷ୍ଟିରେ ବନ୍ଧୁ ଚାହିଁରହନ୍ତି । ଆନନ୍ଦର ସୋତରେ ମନର ଦୁଇକୂଳ ଭରିଉଠେ । ଅନୁଭବ କରନ୍ତି, ନର୍ତ୍ତକୀର

ପ୍ରତ୍ୟେକ ଅଙ୍ଗଭଙ୍ଗୀ ସହିତ ତାଳ ରଖି ତାଙ୍କର ରକ୍ତ-ରଶି ଯେପରି ନାଚି ଉଠିଛି । ଉଲଙ୍ଗ ତାଙ୍କର ଅନ୍ତରତ୍ମା ବାହୁ ପ୍ରସାର କରି ନୃତ୍ୟରତା ସେଇ ବିରହିଣୀର ଛନ୍ଦେ ଛନ୍ଦେ ଯେପରି ନାଚିଉଠିଛି ।"

"ଗତି ଗଭୀର ହୁଏ—ଆକାଶ ପ୍ରାନ୍ତରେ ଚନ୍ଦ୍ର ନିଭିଯାଏ । ନର୍ତ୍ତକୀଠାରୁ ଶୁଣନ୍ତି ତା'ର ଜୀବନର କରୁଣ କାହାଣୀ । ପିତୃହୀନା ସେ ନର୍ତ୍ତକୀ—ଗଣିକାକୁଳରେ ତାର ଜନ୍ମ । କିନ୍ତୁ ଗଣିକା ହୋଇ ନିଜର ଜୀବନ ଯୌବନ ପଶୁ-ପୁରୁଷ ହାତରେ ବାଢିଦେଇପାରିଲା ନାହିଁ । ପ୍ରତିବାଦ କଲା; ପ୍ରତିରୋଧ କଲା ପୁରୁଷର ପ୍ରଣୟ ନିବେଦନ । ବିଷାକ୍ତ ହୋଇଉଠିଲା ସେଠାକାର ବାୟୁମଣ୍ଡଳ । ଘର ଛାଡ଼ି ସେ ଘୁରିବୁଲିଲା—ପଦେ ପଦେ ପୁରୁଷର ଲୋଲୁପ ଦୃଷ୍ଟି ତାକୁ ଅନୁସରଣ କଲା । ଭୀଷଣ ଏଇ ସଂଗ୍ରାମରେ ଏକାକୀ ଲଢି ଲଢି ସେ ଯେତେବେଳେ କ୍ଷତବିକ୍ଷତ, କ୍ଳାନ୍ତ, ଏକ ବୃଦ୍ଧ ତାକୁ ଆଶ୍ରୟ ଦେଲେ । ତାଙ୍କଠାରୁ ତା'ର ଏଇ ନୃତ୍ୟଶିକ୍ଷା । ତାର ବିଂଶତି-ବର୍ଷ ଜୀବନର କଠୋର କରୁଣ ଅନୁଭୂତିରେ ଶୁଦ୍ଧ ତାର ପ୍ରତ୍ୟେକ ଛନ୍ଦ ଓ ଭଙ୍ଗୀ । ପ୍ରଥମ ଗତିରେ ସେଠି ଯେତେବେଳେ ଶକୁନ୍ତଳାର ବିରହ-କାତର ଅନ୍ତର ତାର ଅଙ୍ଗେ ଅଙ୍ଗେ ମୂର୍ତ୍ତ ହୋଇ ଉଠୁଥିଲା, ସେତେବେଳେ ମୁଗ୍ଧ ଦୃଷ୍ଟିରେ ସେ ଦେଖିଥିଲା ଅନୁପମ ଦୁଇଟି ଆଖି । ସେଥିରେ ଥିଲା ଅପୂର୍ବ ଏକ ପରିଚୟ, ଏକ ଅଭୂତପୂର୍ବ ତନ୍ମୟତା । ଅନାଗତ ଦୁଷ୍ମନ୍ତର ପ୍ରତିବିମ୍ବ ଥିଲା ସେ ଆଖିରେ । ତାର ଶୀର୍ଣ୍ଣ ଜୀବନସ୍ରୋତ ପ୍ରଥମ ଥର ପାଇଁ ଆବିଷ୍କାର କରିଥିଲା ଦିଗନ୍ତରେ ସାଗରରେଖା ।"

"ବନ୍ଧୁଙ୍କର ଦୁଇ ଚକ୍ଷୁ ଭରି ଅଶ୍ରୁ ଝରିପଡୁଛି....ନର୍ତ୍ତକୀ ଚୁପ ହେଲା ।"

ଭଦ୍ରଲୋକଙ୍କ କଣ୍ଠ ଥରିଉଠିଲା । ଦୁଇ ହାତ ପାପୁଲିରେ ମୁହଁ ଘୋଡ଼ାଇ ସେ ଚୁପ୍ ହୋଇଗଲେ । କେଉଁଠି ଯେମିତି କାହାର ଗାଢ଼ ନିଶ୍ୱାସ ପଡନ । ମୁଁ ଫେରି ଚାହିଁଲି—ଦୁଆରମୁହଁର ପର୍ଦ୍ଦାରେ ଯେପରି ସାମାନ୍ୟ ଆନ୍ଦୋଳନ ।

ଗ୍ରରିଆଡ଼େ କେମିତି ଗୋଟେ ସ୍ତବ୍ଧ ଥମ୍ ଥମ୍ ଭାବ.... ଦିଗନ୍ତରେ ଯେପରି ବିଦ୍ୟୁତ୍ ସ୍ଫୁରଣର ସଂକେତ । ଭଦ୍ରଲୋକ କହିଗ୍ରଲିଲେ—

"ତା'ପରେ ଯାହା ଘଟିଲା, ଆପଣ ତା' ସହଜରେ ଅନୁମାନ କରି-ପାରିବେ । ବନ୍ଧୁଙ୍କର ଜୀବନରେ ଯେଉଁ ସଂଘର୍ଷ ଆରମ୍ଭ ହେଲା, ତା'ର ସମାଧାନ ଖୋଜିବାକୁ ଯାଇ ସେ କ୍ଷତବିକ୍ଷତ ହୋଇପଡ଼ିଲେ । କ୍ରମେ କ୍ରମେ ଏ ସମ୍ବାଦ ବର୍ଣ୍ଣବହୁଳ ହୋଇ ଅତିରଞ୍ଜିତ ଆକାରରେ ଗ୍ରରିଆଡ଼େ ବିଛାଡ଼ି ହୋଇପଡ଼ିଲା । ବନ୍ଧୁବାନ୍ଧବ ମହଲରେ ଗ୍ରଲିଲା ତୀବ୍ର ସମାଲୋଚନା । ଏଇ ଦୁର୍ନୀତି, ଅବନତି ଦେଖି କେହି କଲେ ଘୃଣା, କାହାର ହୃଦୟ ଅବା ସହାନୁଭୂତିରେ ବିଗଳିତ ହେଲା । ବନ୍ଧୁଙ୍କର ସମସ୍ତ ଯଶ ପ୍ରତିଷ୍ଠା ଅଭିମାନ ମୂଳରେ କୁଠାରଘାତ ହେଲା । ଅବିଚଳିତ ହୃଦୟରେ ସମସ୍ତ ସେ ସହିଥିଲେ । କିନ୍ତୁ ଦିନେ ଅର୍ଦ୍ଧରାତ୍ରରେ ଦେଖିଲେ ଯେ ମମତାର ଶଯ୍ୟା ଶୂନ୍ୟ—ମମତା ନାହିଁ । ଉଠି ବାହାରକୁ ଗଲେ । ଦେଖିଲେ, ଅଗଣାରେ ଜହ୍ନ ଆଲୁଅରେ ମମତା ସ୍ତବ୍ଧ ହୋଇ ଚେୟାରଟିରେ ବସିଛି । ପାଖକୁ ଯାଇ ଦେଖିଲେ, ମମତା ଅଧୀର ଆବେଗରେ ଶିଶୁଟି ପରି କାନ୍ଦୁଛି, ସାରା ଦେହ ଥରିଉଠୁଛି । ମମତାକୁ ଛାତିକୁ ଆଉଜାଇଆଣି ନିଜର ଲୁଗାକାନିରେ ମମତାର ଆଖିରୁ ଲୁହ ପୋଛିଦେଲେ । ମମତାର କାନ୍ଦଣା ବନ୍ଦ ହେବାର ନୁହେଁ । ସ୍ୱାମୀଙ୍କର ଛାତିରେ ମୁହଁ ଲୁଗ୍ରଇ କଇଁ କଇଁ ହୋଇ ସେ କାନ୍ଦିଉଠିଲା । ବନ୍ଧୁ ନିର୍ବାକ୍ । ଆକାଶପ୍ରାନ୍ତରେ ମୁମୂର୍ଷୁ ଚନ୍ଦ୍ର ଆଡ଼େ ଗ୍ରହିଁ ସେ ନିଶ୍ୱାସ ପକାଇଲେ ।"

"ଦିନ ଗଡ଼ିଗ୍ରଲେ । ବନ୍ଧୁଙ୍କଠାରୁ ନର୍ତ୍ତକୀ ସବୁ ଶୁଣିଛି—ମମତା କଥା, ବୁଲ୍‌ବୁଲ୍ କଥା । 'କେଡ଼େ ସୁନ୍ଦର ନ ହୋଇଥିବ ସତେ....ମୁଁ ଟିକେ ଦେଖନ୍ତି....ହଁ, କୁହ, ଦେଖାଇବ....ମମତା ଅପା ମୋ ଉପରେ କଣ ରାଗୁଥିବେ ? କାହିଁ, ମୋ ମନରେ ତ ରାଗ ବା ଈର୍ଷା ହେଉନାହିଁ.. ତାଙ୍କୁ ଦେଖିଲେ ତାଙ୍କ ଗୋଡ଼ତଳେ ପଡ଼ି ମୁଣ୍ଡିଆ ମାରନ୍ତି । କିନ୍ତୁ ମୋତେ କଣ ସେ ଛୁଇଁବେ ? ମୁଁ ତ କାହିଁ କିଛି ପାପ କରିନାହିଁ । ଗଣିକା

ଘରେ ଜନ୍ମ ହୋଇଛି ବୋଲି ଘୃଣା କରିବେ ? କୁହ, କୁହ, ସତକଥା କୁହ !"

"ବନ୍ଧୁ ନିର୍ବାକ୍ ହୋଇ ସବୁ ଶୁଣିଯାନ୍ତି । ଭବନ୍ତି, ଏ'କଣ ସବୁ ଭୁଲ ? ତାଙ୍କ ଜୀବନପଥରେ ପ୍ରଥମ ଥର ପାଇଁ ଯେଉଁ ଆଲୋକର ସନ୍ଧାନ ମିଳିଲା, ତାକୁ ସେ ଭୁଲ ବୋଲି ମାନିନେବେ ବା କିପରି ? ଜୀବନ ଭଳି ଏକ ମହାନ୍ ଆଶୀର୍ବାଦ ପାଇ ସେ ଜୀବନକୁ ନେଇ କ'ଣ କରିଛନ୍ତି ଏଇ ତିରିଶ ବର୍ଷ ଧରି ? ଆଜି ଯଦି କାହା ଆଗରେ ତାଙ୍କୁ କୈଫିୟତ୍ ଦେବାକୁ ପଡ଼େ, କ'ଣ ବୋଲି ସେ ସଫେଇ ବାଢ଼ିବେ ? ମୋଟା ଦରମା, ଗାଡ଼ି, ବ୍ୟାଙ୍କ ବେଲେନ୍‌ସ—କିଛି ନାମ, କିଛି ଖାତିର ? ବାସ୍....ଏଇ ତାଙ୍କର ଜୀବନ ଭଳି ମହାଯାତ୍ରାର ସମାରୋହ । କ'ଣ ତାର ମୂଲ୍ୟ....କି ବା ତାର ତାତ୍ପର୍ଯ୍ୟ ! ଏକ ଅନ୍ତଃସାରଶୂନ୍ୟ କଦର୍ଯ୍ୟ ଚିତ୍ରକୁ ବହୁମୂଲ୍ୟ ଫ୍ରେମ୍‌ରେ ବନ୍ଧାଇଲେ ଚିତ୍ରଟି ଅଧିକ ସୁନ୍ଦର ନ ହୋଇ ବୀଭତ୍ସ ହୋଇଯିବ ସିନା ! ଏଇ ଜୀବନଚିତ୍ରରେ ସାମାନ୍ୟ ପ୍ରାଣ ସଂଯୋଗ କରିବାର ଚେଷ୍ଟା କ'ଣ ଭୁଲ ?"

"କିନ୍ତୁ ମମତା ? ମମତାର ଦୋଷ ବା କଣ ? ମମତାର ଉଜ୍ଜ୍ୱଳ ନିର୍ମଳ ଚକ୍ଷୁରେ ଆଜି ଅଶ୍ରୁର ଧାର ଛୁଟୁଛି କାହିଁକି ? ତା'ର ସେ କଣ ଉତ୍ତର ଦେବେ ? ତା'ର ଆଖିର ଏକ ବିନ୍ଦୁ ଅଶ୍ରୁ ତାଙ୍କର ସମସ୍ତ ପୌରୁଷର ପରାଜୟ ପ୍ରମାଣ କରୁଛି । ମମତା ବାଧା ସୃଷ୍ଟି ନ କରି ନିଃଶବ୍ଦରେ ଆଜି ଯେ ଅପସରିଯାଉଛି....ତା'ର ଅର୍ଥ କେବେ ସେ ବୁଝିବାକୁ ଚେଷ୍ଟା କରିଛନ୍ତି କି ?"

"ନା, ନା, ନା,....ମୁହୂର୍ତ୍ତକ ପାଇଁ ମମତାର ଅପମାନ ସେ ସହିପାରିବେ ନାହିଁ..ମମତା ପ୍ରତି ସାମାନ୍ୟତମ ଅବିଚାର ବରଦାସ୍ତ କରିପାରିବେ ନାହିଁ । ସେଥିପାଇଁ ଜୀବନପାତ କରିବାକୁ ହେଲେ ବି ସେ ପ୍ରସ୍ତୁତ ।"

"ବନ୍ଧୁଙ୍କର ଚିତ୍ତସ୍ଥୈର୍ଯ୍ୟ ହଜିଲା । ହାଇ ପାଓ୍ୱାର ଗାଡ଼ିରେ ଶହ ଶହ ମାଇଲ ଅତିକ୍ରମ କରି ଗତିଶେଷରେ ମମତାକୁ କୋଳ ଭିତରକୁ ଟାଣି-

ନେଇ ବନ୍ଧୁ ଉନ୍ମତ୍ତ ପରି ପଗ୍ଚରିବସନ୍ତି, 'ମମତା, କୁହ, ସତ କୁହ.... ତୁମେ ମୋ ବ୍ୟବହାରରେ କ୍ଷୁଣ୍ଣ ହୋଇଛ ? ତୁମେ କାନ୍ଦୁଛ ?' ମମତା କ୍ଷଣକ ଭିତରେ ସ୍ୱାମୀଙ୍କର ବଳିଷ୍ଠ ବାହୁ ଆଲିଙ୍ଗନ ମଧ୍ୟରେ ନିଜକୁ ନିଶ୍ଚିହ୍ନ କରିପକାଏ । ତା'ର ଅନାବିଳ ଶିଶୁପ୍ରାଣ ମୁଗ୍ଧ ବିସ୍ମୟରେ ସ୍ୱାମୀଙ୍କୁ ସର୍ବତୋଭବରେ ଗ୍ରହଣ କରେ । ମମତା ସ୍ୱାମୀଙ୍କର ପଦ-ଦେଶରେ ପ୍ରଣାମ କରି ଅନୁଚ୍ଚରେ କହେ, 'ତୁମକୁ ମୋ ପାଖରୁ କିଏ କାଢି-ନେବ ଯେ ମୋର ଭୟ ହେବ ? ତୁମେ ଯେ ମୋର....ସଂପୂର୍ଣ୍ଣଭବେ ମୋର'....

"ବନ୍ଧୁଙ୍କର ଛାତି ଥରିଉଠେ ।........ଦିନ ଯାଏ——"

"ବନ୍ଧୁ କାତର ହୋଇପଡ଼ନ୍ତି....କିଏ କହିଦେବ, କଣ ତାଙ୍କର କର୍ତ୍ତବ୍ୟ ? ନର୍ତ୍ତକୀଠାରୁ ମମତା, ମମତାଠାରୁ ନର୍ତ୍ତକୀ—ସୁଦୂର ପଥରେ ଗାଡ଼ି ଛାଡ଼ିଦେଇ ଭବନ୍ତି, କେଉଁଟା ଠିକ୍, କେଉଁଟା ଭୁଲ । ହୁଏତ ଦୁଇଟା-ଯାକ ଠିକ୍ ବା ଦୁଇଟାଯାକ ଭୁଲ । ମମତା ତାଙ୍କ ଜୀବନରେ ଆଣିଛି—ସୁଖ, ଶାନ୍ତି ଓ କଲ୍ୟାଣ । ନିଜର ଶିକ୍ଷା, ଧାରଣା ଓ ଚିନ୍ତା ଦେଇ ମମତା ସ୍ୱାମୀଙ୍କୁ ସର୍ବତୋଭବେ ସୁଖୀ କରିପାରିଛି । କିନ୍ତୁ ସୁଖ ଓ ଶାନ୍ତି କ'ଣ ଜୀବନର ଶେଷ ଓ ଶ୍ରେଷ୍ଠ ଉଦ୍ଦେଶ୍ୟ ? କ'ଣ ନାମ ଏଇ ସୁଖ ଓ ଶାନ୍ତିର ? କ'ଣ ତା'ର ଅର୍ଥ ? ଏ ସୁଖଶାନ୍ତି ସଂଭେଗର ସମ୍ବାଦ ମର୍ମମୂଳରେ ପହୁଞ୍ଚିପାରିଛି କି ? ପ୍ରାଣତଳୁ ମିଳିଛି କି ତା'ର ସ୍ୱାକ୍ଷର ? ଅଚଞ୍ଚଳ ସ୍ଥିର ସରୋବରରେ ଅବଗାହନ ନିଶ୍ଚୟ ନିରପଦ ଓ ଆରମପ୍ରଦ । କିନ୍ତୁ ବୀଚିବିକ୍ଷୋଭିତ ଖରସ୍ରୋତା ନଦୀସ୍ରୋତରେ ସନ୍ତରଣ ! ସେଥିରେ ଘଟିପାରେ ଶକ୍ତିକ୍ଷୟ, ଜୀବନକ୍ଷୟ । ଘଟୁନା ! ଘଟିଲେ ବି ତା' ଜୀବନକୁ କରିଦେଇଯାଏ ସାର୍ଥକ ଓ ସଂପୂର୍ଣ୍ଣ । ସେ କ୍ଷୟ ହୁଏ ଅକ୍ଷୟ । ସରୋବରର ଶୃଙ୍ଖଳା ଓ ଗେରେଣ୍ଟି ସେଠାରେ ଅଥର୍ବ ଓ କ୍ଲୀବ । ସେଇପରି ଖରସ୍ରୋତାର ଦୁର୍ଦ୍ଧର୍ଷ ପ୍ରାଣପ୍ରାଚୁର୍ଯ୍ୟ ସରୋବର ଚକ୍ଷୁରେ ଉଚ୍ଛୃଙ୍ଖଳ ଓ ଦୁର୍ନୀତି ରୂପରେ ଦେଖାଦେଇପାରେ । ତାର ଅପରିସୀମ କମନୀୟତା, ଆବେଗ, ସତ୍ୟତାର

ଆଲୋକ, କଠୋର ଏଇ ନୀତି ନିର୍ଦ୍ଦେଶର କୁହେଳି ତଳେ ଘୃପା ପଡ଼ିଯାଏ । କେଉଁଟା ଭୁଲ, କେଉଁଟା ଠିକ୍ ?”

“କିଏ ତାର ଉତ୍ତର ଦେବ ? ବନ୍ଧୁ ଉନ୍ମତ୍ତ ପରି ଖୋଜିବୁଲନ୍ତି ଏଇ ପ୍ରଶ୍ନର ନିର୍ଭୁଲ ସମାଧାନ ।”

“ରାତିର ଅନ୍ଧକାରକୁ ଚିରି ତାଙ୍କର ଗାଡ଼ି ଛୁଟେ—ନର୍ତ୍ତକୀ ତାଙ୍କ କାନ୍ଧ ଉପରକୁ ଆଉଜି ବସି ଗୀତ ଗାଏ । ଘନ୍ତାକଡ଼ର ଧାଡ଼ି ଧାଡ଼ି ବୃକ୍ଷ-ଶ୍ରେଣୀ ମୁଗ୍ଧ ଆନନ୍ଦରେ ପ୍ରତିଧ୍ୱନି କରିଉଠନ୍ତି । ବନ ଜଙ୍ଗଲ ମଧ୍ୟରେ ପଥ ଡାକି ଡାକି ନେଇଯାଏ । ଗାଡ଼ି ଗର୍ଜନ କରି ଛୁଟିଗ୍ଲେ । ତା’ର କୃଷ୍ଣଗାତ୍ରରେ ତାରକାପୁଞ୍ଜର ପ୍ରତିବିମ୍ବ । ନର୍ତ୍ତକୀ ବନ୍ଧୁଙ୍କର କୋଳ ଭିତରକୁ ପଶିଯାଇ ଷ୍ଟିଅରିଂ ଧରେ । ମନେ ମନେ କହେ—ଏଇ ପ୍ରଚଣ୍ଡ ଶକ୍ତିର ରଥଚକ୍ର ତଳେ ସେ ନିଷ୍ପିଷ୍ଟ ହୋଇ ମରିଯାନ୍ତା....ଏଇ ମୁହୂର୍ତ୍ତର ଘୃପତଳେ ସେ ଯଦି ନିଷ୍ପ୍ରାଣ ଓ ଶୀତଳ ହୋଇଯାନ୍ତା । ବନ୍ଧୁ ଭାବନ୍ତି, ଏଇ ତ ଜୀବନ....ଜୀବନଠାରୁ ଆଉ ମୋର ଅଧିକ କିଛି ପ୍ରାପ୍ୟ ନାହିଁ । ଜୀବନଦେବତାଙ୍କ ଉଦ୍ଦେଶ୍ୟରେ ସେ ହାତ ଟେକି ନମସ୍କାର କରନ୍ତି ।”

“ରାତି ଠିକ ଶେଷ ହୋଇନାହିଁ—କୋଣାର୍କର ପ୍ରବେଶଦ୍ୱାରରେ ଗାଡ଼ି ଆସି ଅଟକେ । ବନ୍ଧୁ ନର୍ତ୍ତକୀର ହାତ ଧରି ମନ୍ଦିରର ପାଦମୂଳରେ ଆସି ଛିଡ଼ା ହୁଅନ୍ତି....ତାରକାମାଳାର ଚୂର୍ଣ୍ଣ ଆଲୋକରେ ଘୁରି ଘୁରି ଦେଖନ୍ତି କଳାର ଅପୂର୍ବ ସମାରୋହ । ଅବଶ ଅଙ୍ଗ, ଆଛନ୍ନ ଚେତନା....। ନାଟ-ମଣ୍ଡପର ଅଙ୍ଗନରେ ବସି ବନ୍ଧୁ ଘୃହିଁ ରହନ୍ତି—ତାରକା ଆଲୋକରେ କୋଣାର୍କର ଅସ୍ପଷ୍ଟ ଛାୟାଚିତ୍ର । ସେ ଏକ ଅପୂର୍ବ ଅନୁଭୂତି । ମନ୍ଦିରଗାତ୍ରରେ ଶତଶତ ନର୍ତ୍ତକୀର ନଗ୍ନ ତନୁଛାୟା ଯେପରି ପ୍ରାଣବନ୍ତ ହୋଇଉଠନ୍ତି । କ୍ଷୀଣ କଟୀତଟ ଉଲ୍ଲସିତ ହୁଏ....ବକ୍ଷ ସ୍ଫୀତ ହୁଏ....ଅଧରରେ ଫୁଟି-ଉଠେ ମୃଦୁ ମଧୁର ହାସ୍ୟ । ମୃଦଙ୍ଗରେ କରତଳ ଆଘାତ କରେ, ଘଣ୍ଟା ବାଜେ, କରତାଳ ବାଜେ, ପଦର ନୂପୁର ରିଣିଝିଣି କରିଉଠେ । ତା’ପରେ ସମସ୍ତ ଆକାଶ ପବନ ପ୍ରତିଧ୍ୱନିତ କରି ଏକ ଅଶ୍ରୁତପୂର୍ବ

ଐକ୍ୟତାନ....ଓ ସେଇ ବାଦ୍ୟର ତାଳେ ତାଳେ ନର୍ତ୍ତକୀଗଣଙ୍କ ପଦରେ, ପ୍ରତି ଅଙ୍ଗରେ ଫୁଟେ ନୃତ୍ୟ-ଛନ୍ଦ । ବନ୍ଧୁ କ୍ରୋଡ଼ାଶ୍ରିତା ସୁପ୍ତା ନର୍ତ୍ତକୀକୁ ଜାଗ୍ରତ କରନ୍ତି ଓ ନିଜର ବାହୁରେ ବହନ କରି ନେଇଯାନ୍ତି ମନ୍ଦିରର ଉଚ୍ଚକୁ ଉଚ୍ଚକୁ ।"

" ନୃତ୍ୟରତା ଏକ ପ୍ରସ୍ତରମୂର୍ତ୍ତିର ଅଙ୍ଗରେ ଅଙ୍ଗ ଲଗାଇ ନର୍ତ୍ତକୀ ଯାଇ ଠିଆ ହୁଏ । ସେଇ ଅଙ୍ଗଭଙ୍ଗୀ, ସେଇ ଠାଣି ଅନୁକରଣ କରୁ କରୁ ତା'ର ପରିଧାନ ଖସିପଡ଼େ—ସେଆଡ଼େ ତା'ର ଦୃଷ୍ଟି ନାହିଁ । ପ୍ରସ୍ତରମୂର୍ତ୍ତିର ଅବିକଳ ପ୍ରତିଛବି ତା'ର ଅବୟବରେ ଫୁଟିଉଠୁଛି । ପଦଯୁଗଳରେ ସେଇ ନୃତ୍ୟଛନ୍ଦ, କଟୀତଟରେ ସେଇ ମୂର୍ଚ୍ଛନା, ଅଙ୍ଗେ ଅଙ୍ଗେ, ପ୍ରତ୍ୟେକ ମାଂସପେଶୀରେ ସେଇ ଆବେଗ, ସେଇ ଆବେଦନଶୀଳତା ।"

"ପୂର୍ବ ଆକାଶ କ୍ରମେ ଉଜ୍ୱଳ ହୋଇଉଠୁଛି । ଦୂରରେ ସମୁଦ୍ରର ନୀଳରେଖା । ଝାଉଁବଣରେ ପବନର ମୃଦୁ ଜାଗରଣ ।"

× × × ×

"ନର୍ତ୍ତକୀଠାରୁ ବିଦାୟ ନେଇ ସେଇଦିନ ସେ ଫେରିଆସିଲେ । ଘରେ ଆସି ପହଞ୍ଚିଲାବେଳକୁ ଦେଖନ୍ତି ଘର ଆଗରେ ଗୋଟାଏ ବଡ଼ ଗାଡ଼ି । ଚିହ୍ନିଲେ, ସିଭିଲ ସର୍ଜନଙ୍କର କାର । ସିଭିଲ ସର୍ଜନ ? ଘର ଭିତରକୁ ଗଲେ । ଯାଇ ଦେଖନ୍ତି, ବୁଲବୁଲ ନିସ୍ତେଜ ହୋଇ ଆଖି ବୁଜି ପଡ଼ିରହିଛି । ସିଭିଲ ସର୍ଜନ ତା' ଉପରକୁ ଝୁଙ୍କିପଡ଼ି ଛାତି ପରୀକ୍ଷା କରୁଛନ୍ତି । ସ୍ତବ୍ଧ ହୋଇ ଛିଡ଼ା ହୋଇଛି ମମତା । ସମସ୍ତେ ଚୁପ୍‌ଚାପ୍ । ସିଭିଲ ସର୍ଜନ ଥରେ ବନ୍ଧୁଙ୍କ ଆଡ଼େ ଚାହିଁ ଅସ୍ପଷ୍ଟ ଗଳାରେ ନିଜକୁ ନିଜେ କହିହେଲେ, 'ଆପଣ ତା' ହେଲେ ଆସିଗଲେଣି ?' ବନ୍ଧୁ ନିର୍ବାକ୍ । ସେ ଝୁଙ୍କିପଡ଼ି ବୁଲ୍‌ବୁଲ୍‌ର କପାଳରେ ହାତ ଦେଲେ—ତାତି ଫୁଟୁଛି । କଣ୍ଠ ଘଡ଼ ଘଡ଼ ଶୁଭୁଛି । ମମତା ଆଡ଼େ ଚାହିଁଲେ..ମମତା ଆଖି ଫେରାଇନେଲା । ସିଭିଲ ସର୍ଜନ ପରୀକ୍ଷା ଶେଷ କରି ବାହାରକୁ ଆସିଲେ—କହିଲେ, ସେ ଟାଇଫଏଡ ସନ୍ଦେହ କରୁଛନ୍ତି—'କିନ୍ତୁ ଏଇ ତ ଚାରିପାଞ୍ଚଦିନ ହେଲା । କିଛି

ଠିକ କହିହେଉନାହିଁ । ଆପଣ ଥିଲେ କେଉଁଠି ? ପିଲଟା ଆପଣଙ୍କୁ ବଡ଼ ବିକଳ ହୋଇ ଖୋଜୁଥିଲା । ଆଛା, ମୁଁ ପୁଣି ସନ୍ଧ୍ୟାବେଳକୁ ଆସିବି.. ନମସ୍କାର ।”

“ସିଭିଲ ସର୍ଜନ ଚାଲିଗଲେ । ବୁଲ୍‌ବୁଲ୍‌ର ଶେଯପାଖକୁ ଫେରି-ଆସି ତା’ କପାଳରେ ଦେହରେ ହାତ ବୁଲାଇ ଦେଉ ଦେଉ ବନ୍ଧୁ ମମତାକୁ ଖୋଜିଲେ । ମମତା ସେ ଘରୁ କେତେବେଳେ ଚାଲିଯାଇଛି । ପାଟି କରି ଡାକିଲେ, ‘ମମତା !’ ଉତ୍ତର ନାହିଁ । ଚାକର ଆସି କହିଲା— ‘ବାଥ୍ ରୁମରେ ପାଣି ଦିଆଯାଇଛି । ମା କହିଲେ ଗାଧୋଇଯିବାକୁ’.. ତଳେ ଚଟାଣରେ ବସି ବୁଲ୍‌ବୁଲ୍‌ର ଦେହରେ ମୁଣ୍ଡରେ ହାତ ବୁଲାଇ ଦେଉ ଦେଉ ବେଳ ଗଡ଼ିଚାଲିଲା......ବାରଟା, ଗୋଟେ, ଦି’ଟା । ଚାକର, ପୂଝାରୀ ସମସ୍ତେ ଉପାସ ବସିଛନ୍ତି । ମମତା ଚାରିଦିନ ହେଲା କିଛି ଖାଇ-ନାହିଁ କହିଲେ ଚଳେ । ମଝିରେ ମଝିରେ ବୁଲ୍‌ବୁଲ୍ ଆଖି ଫିଟାଇ ଚାହୁଁଛି.. କାନ୍ଦିଉଠୁଛି..ପୁଣି ନିସ୍ତେଜ ହୋଇଯାଉଛି । ବନ୍ଧୁ ଏକଦୃଷ୍ଟିରେ ତା’ ଆଡ଼େ ଚାହିଁ ବସିଛନ୍ତି । ଅନିଦ୍ରା, କ୍ଳାନ୍ତି ଓ ଘରେ ପହୁଞ୍ଚି ଏ ଧକ୍‌କାରେ ତାଙ୍କର ସମସ୍ତ ଦେହ ଥର ଥର ହୋଇ କମ୍ପୁଛି, ମୁଣ୍ଡ ଘୁରୁଛି..।”

“କ୍ରମେ ଦେଖାଗଲା ବୁଲ୍‌ବୁଲ୍‌ର ଟାଇଫଏଡ୍ । ଦି ବେଳା ଡାକ୍ତର, ନର୍ସ । ବନ୍ଧୁ ଓ ମମତା ଏକାଗ୍ରଚିତ୍ତରେ ମନପ୍ରାଣ ଢାଳି ବୁଲ୍‌ବୁଲ୍‌ର ସେବାରେ ଲାଗିଛନ୍ତି । ‘ବୁଲ୍‌ବୁଲ୍’ ‘ବୁଲ୍‌ବୁଲ’—ମୁହଁ ପାଖରେ ମୁହଁ ଲଗାଇ ସେ ଅନୁଚ୍ଚ ଗଳାରେ ଡାକନ୍ତି । ବୁଲ୍‌ବୁଲ୍ ଶୁଣେ ନାହିଁ । ବେଳେ-ବେଳେ ଆଖି ଫିଟିଯାଏ । କିଛିକ୍ଷଣ ପାଇଁ ସେ ଆଖି ବନ୍ଧୁଙ୍କ ମୁହଁ-ଉପରେ ଘୁରିଆସି ପୁଣି ବନ୍ଦ ହୋଇଯାଏ । ବନ୍ଧୁ ହୋ ହୋ କରି କାନ୍ଦି ଉଠନ୍ତି । ମମତା ପାଖଘରୁ ଦୌଡ଼ିଆସେ । ସିଭିଲ୍ ସର୍ଜନ ପାଖକୁ ଫୋନ ହୁଏ । ସିଭିଲ ସର୍ଜନ ଆସନ୍ତି । ସବୁ ପରୀକ୍ଷା କଲା ପରେ ତାଙ୍କର ମୁଖ ଅପ୍ରସନ୍ନ ଦେଖାଯାଏ । ସିଭିଲ୍ ସର୍ଜନ ଗଲାବେଳେ କହିଯାନ୍ତି, ‘ଆଜି ରାତିଟା ସାବଧାନରେ ଥିବେ’ । ରାତି ବଢିଚାଲେ । ମମତା ଓ ବନ୍ଧୁ ବୁଲ୍‌ବୁଲ୍‌ର

ଶେଯରେ ବସିରହିଛନ୍ତି । ବୁଲବୁଲ୍ ପ୍ରଳାପ କରି ଉଠୁଛି....'ବାବା, ବାବା.... କୁଆଡ଼େ ଚାଲିଯାଇଥିଲ.. ମୁଁ କେତେ ଖୋଜିଲି....ମୋତେ ଆଉ ଛାଡ଼ି ଚାଲିଯିବ ନାହିଁ....କୁହ, ବାବା, ବାବା !'

ଭଦ୍ରଲୋକଙ୍କର ବାକ୍‌ରୁଦ୍ଧ ହେଲା । ସେ ଚୁପ୍ ହୋଇ ବସିରହିଲେ । ପଶ୍ଚିମ ଆକାଶରେ ଚନ୍ଦ୍ର ଢଳିପଡ଼ିଛି । ପାହାନ୍ତିଆ ପବନ ଗଛଡାଳରେ ଚେଇଁଉଠୁଛି । ବଙ୍ଗଳାର ଛାଇ କ୍ରମେ ଦୀର୍ଘ ହୋଇଆସୁଛି । ରାତି ବେଶି ବାକୀ ନାହିଁ ।

କାନରେ ବାଜିଲା ସେଇ ଚପଚାପ ନିଶ୍ୱାସ ଧ୍ୱନି....କିଏ ଯେପରି ନୀରବରେ ଥରି ଥରି କାନ୍ଦୁଛି । କ୍ରମେ କ୍ରମେ ତା ସ୍ପଷ୍ଟ ହୋଇଉଠୁଛି । ଭଦ୍ରଲୋକଙ୍କ ଆଡ଼େ ଚାହିଁଲି । ସିଗ୍ରେଟ ଧରାଇ ସେ କହିଚାଲିଲେ—

"ସେ ରାତି ବଡ଼ ଭୟଙ୍କର ରାତି । ବାହାରେ ଝଡ଼ ଉଠିଛି । ବୁଲ୍‌ବୁଲ୍‌ର ଚେତନା ଫେରୁନାହିଁ । ପ୍ରଳାପ ଅସ୍ପଷ୍ଟ ହୋଇଆସୁଛି । ବନ୍ଧୁ କାତର-ଚକ୍ଷୁରେ ମମତାଆଡ଼କୁ ଚାହୁଁଛନ୍ତି । ମମତାର ଦୁଇ ଆଖି ଭରି ଲୁହ ଝରି-ପଡୁଛି । ସ୍ୱାମୀଙ୍କର ଏଇ କାତର କରୁଣ ଚାହାଣିରେ ତା'ର ହୃଦୟ ଫାଟି-ପଡ଼ିଲା ଯେପରି । ସେ କହିଲା—

'ତୁମେ ଯଦି ଆଉ ଦି'ଟା ଦିନ ଆଗରୁ ଆସିଥାନ୍ତ, ବୁଲବୁଲ୍ ମୋର ଏମିତି ହୋଇ ନ ଥାନ୍ତା । କେତେ ଖୋଜିଲା ସେ....ବାବା ବାବା କରି କେତେ ଡାକିଲା ।' ମମତା ଆଉ କହିପାରିଲା ନାହିଁ ।"

"ବନ୍ଧୁ ଚିତ୍କାର କରିଉଠିଲେ, 'ଭଗବାନ, ଭଗବାନ' ଓ ପର ମୁହୂର୍ତ୍ତରେ ମମତାର କୋଳରେ ଲେଟିପଡ଼ି ମା' କୋଳରେ ଶିଶୁଟି ପରି କଉଁ କଉଁ ହୋଇ କାନ୍ଦିଉଠିଲେ.... 'କୁହ ମମତା, ବୁଲ୍‌ବୁଲ୍ ମୋତେ କ୍ଷମା କରିଛି ? ତୁମେ ମୋତେ କ୍ଷମା କରିଛ ? ମୋର ବୁଲ୍‌ବୁଲ୍‌କୁ ଡାକ, ତାକୁ ବଞ୍ଚାଅ....'

"ରାତି ଶେଷବେଳକୁ ବୁଲ୍‌ବୁଲର ଚେତନା ଫେରିଆସିଲା । ସେ ପାଟି କରି ଉଠିଲା, 'ବାବା, ବାବା !' ବନ୍ଧୁ ଉଠିଯାଇ ବୁଲ୍‌ବୁଲ୍‌କୁ କୋଳରେ ନେଇ କହିଉଠିଲେ, 'ଏଇ ଯେ ମା, ମୁଁ ଏଇଠି..ବୁଲ୍‌ବୁଲ୍..ମୋର ସୁନାର ବୁଲ୍‌ବୁଲ୍....କେମିତି ଲାଗୁଛି ମା..? ମୁଁ ତୋ ପାଇଁ କେତେ ଖେଳନା ଆଣିଛି....ସକାଳ ହେଉ, ଦେଖିବୁ..।' ବୁଲ୍‌ବୁଲ୍ ହାତ ବଢ଼ାଇ ବନ୍ଧୁଙ୍କ ମୁହଁରେ ହାତ ରଖି କହିଲା ଭଙ୍ଗା ଭଙ୍ଗା କଣ୍ଠରେ, 'ମୁଁ ଏବେ ଭଲ ହୋଇଯିବି ଯେ....ତୁମେ ଆସିଲଣି..ମୋତେ ଆଉ କେବେ ଛାଡ଼ି ଯିବ ନାହିଁ..କୁହ ବାବା !' ବନ୍ଧୁ କନ୍ୟାର ଚିବୁକ ଚୁମ୍ବନ କରି କହିଲେ, 'ନାହିଁ ମା, ମୋର ବୁଲୁରାଣୀ ପାଖ ଛାଡ଼ି ଆଉ କେବେ ଯିବିନାହିଁ ।' ମମତା ମୁଗ୍‌ଧଚକ୍ଷୁରେ ଦେଖୁଛି—ମନେହେଉଛି ସ୍ୱାମୀଟି ଯେପରି ତା'ର କେଉଁ ଅତୀତ କାଳର ସନ୍ତାନ । ବାହାରେ ଝଡ଼ର ବେଗ କମିଯାଇଛି । ଅଫିସ ଘରେ ଫୋନ ବାଜୁଛି । ବୋଧହୁଏ ବୃଦ୍ଧ ସିଭିଲ୍ ସର୍ଜନ । ନର୍ସ, ଯାଅ ତ, କହିଦିଅ..ବୁଲୁରାଣୀ ମୋର କଥା କହିଲଣି, ହସିଲଣି....।"

"ତା'ପରର ଗପ ସଂକ୍ଷିପ୍ତ..। ହଠାତ୍ ନର୍ତ୍ତକୀର ଏକ ଚିଠି ଆସି ପହଞ୍ଚିଲା । ଅଶ୍ରୁରେ ଲେଖା ସେଇ ଚିଠି—ପନ୍ଦର ଦିନ ହେଲା ଦେଖିନାହିଁ । ଖିଆ ନାହିଁ, ଶୁଆ ନାହିଁ, ଅପଲକ ଆଖିରେ ସେ ରୁହିଁରହିଛି ବନ୍ଧୁଙ୍କର ଆସିବାର ପଥ । ମଟର ହର୍ଣ୍ଣ ଶୁଣିଲେ ସେ ଦାଣ୍ଡକୁ ଦୌଡ଼ିଯାଉଛି । ଧୂଳି ଉଡ଼ାଇ କେତେ ମଟର ଚାଲିଯାଉଛି, କେହି ରହୁନାହିଁ । ଥରେ ଖାଲି ଆଖି ଭରି ଦେଖିବାକୁ ତାର ମନପ୍ରାଣ ବିକଳ ହୋଇଉଠୁଛି । ତାର ସବୁ ଦୋଷ କ୍ଷମା କରି ଥରେମାତ୍ର ଦେଖା ଦେବାକୁ ସେ ଅନୁରୋଧ କରିଛି । ଆଉ ଅଧିକ ନୁହେଁ । ସେ ଅଟକାଇବ ନାହିଁ, ପଥ ଓଗାଳି ଠିଆ ହେବ ନାହିଁ ।

"ବନ୍ଧୁଙ୍କ ଆଖି ଆଗରେ ଭାସିଉଠିଲା ଶକୁନ୍ତଳାର ସେଇ ବିରହ-ଦଗ୍‌ଧ ପ୍ରତୀକ୍ଷା..ତାରକାଲୋକିତ କୋଣାର୍କ ଚୂଡ଼ାରେ ନୃତ୍ୟରତା ସେଇ ନର୍ତ୍ତକୀର ଅପାର୍ଥିବ ଆତ୍ମୋତ୍ସର୍ଗ । ବନ୍ଧୁ ଅସ୍ଥିର ହୋଇଉଠିଲେ । ଘରକୁ

ଫେରି ବୁଲ୍‌ବୁଲ୍‌କୁ ଛାତି ଉପରେ ଚାକି ଧରିଲେ । ମମତାର କାନ୍ଧରେ ମୁହଁ ଗୁଞ୍ଜି ମନେମନେ ସେମାନଙ୍କଠାରୁ କ୍ଷମାଭିକ୍ଷା କରିନେଲେ । ଥରକପାଇଁ ସେ ନର୍ତ୍ତକୀକୁ ଦେଖିବେ..ବାସ୍..ଆଉ ନୁହେଁ । ନର୍ତ୍ତକୀର ଡାକ ଆସିଛି.. ତାକୁ ଅସ୍ୱୀକାର କରିବାର ଶକ୍ତି ତାଙ୍କର ନାହିଁ । ତାଙ୍କୁ ଯିବାକୁ ହେବ । ଚନ୍ଦ୍ରର ନିମନ୍ତ୍ରଣରେ ତାଙ୍କର ରକ୍ତରଣି ଯେପରି ଢେଉ ତୋଳି ନାଚିଉଠିଛି । ଏଟା ପ୍ରକୃତିର ଧର୍ମ, ଅବଶ୍ୟମ୍ଭାବୀର ନିର୍ଦ୍ଦେଶ । ଭବିତବ୍ୟର ସଂକେତ ଧ୍ୱନି । ଥରକ ପାଇଁ, କେବଳ ଥରକ ପାଇଁ ସେ ଆଖି ଭରି ନର୍ତ୍ତକୀକୁ ଦେଖି-ନେବେ—ବାସ୍ ।”

“ବନ୍ଧୁଙ୍କର ଗାଡ଼ି ଛୁଟିଲା । ନର୍ତ୍ତକୀ ଦ୍ୱାରପ୍ରାନ୍ତରେ ଯୁଗ ଯୁଗ ଧରି ଯେପରି ଅନାଗତ ପ୍ରେମିକର ପ୍ରତୀକ୍ଷାରେ ଚିତ୍ର ପରି ଛିଡ଼ାହୋଇ ରହିଛି । ବନ୍ଧୁଙ୍କ ପଦତଳେ ଲେଟିପଡ଼ି ସେ ସଂଜ୍ଞାଶୂନ୍ୟ ହୋଇପଡ଼ିଲା । ତା’ପରେ ସାରଦିନ ଧରି ଗଭୀର ଜଙ୍ଗଲ ଓ ଅଜଣା ନଦୀର କୂଳେ କୂଳେ ବୁଇକ୍ ଘୁରି ବୁଲିଲା ।”

“ନର୍ତ୍ତକୀ ହାତରେ ଷ୍ଟିଅରିଂ—ବନ୍ଧୁ ତା’ର କାନ୍ଧରେ ମୁଣ୍ଡ ରଖି ଆଖି ବୁଜିଛନ୍ତି । ନର୍ତ୍ତକୀର କଣ୍ଠରେ ସଙ୍ଗୀତ । ଆକାଶର ନୀଳ ଚକ୍ଷୁରେ ଆନନ୍ଦ ।”

“ଆଗରେ ରାସ୍ତା ଉପରକୁ ଉପରକୁ ଚଢିଯାଇଛି—ଘାଟ୍ । ନର୍ତ୍ତକୀ ହାତରୁ ଷ୍ଟିଅରିଂ ନେଇ ବନ୍ଧୁ ଘାଟ୍ ପାର ହେଲେ । ଆଗରେ ବାଁପଟେ ଗୋଟାଏ ବଙ୍ଗଳା—ସେଇଠି ସେମାନେ ଆଶ୍ରୟ ନେଲେ । ରାତିଟିଏ ମାତ୍ର ବାକୀ । ରାତି ଶେଷରେ ତାଙ୍କୁ ଫେରିଯିବାକୁ ହେବ । ମମତାଠାରୁ, ବୁଲ୍‌ବୁଲ୍-ଠାରୁ କେବଳ ରାତିକପାଇଁ ଅନୁଚ୍ଚାରିତ ଅନୁମତି ଆଣିଛନ୍ତି । ତାଙ୍କୁ ଫେରି-ଯିବାକୁ ହେବ । ବୁଲୁରାଣୀର ଚିବୁକ ଚୁମ୍ବନ କରି ସେ ଯେଉଁ ଶପଥ କରିଛନ୍ତି, ମମତାର କୋଳରେ ଶୋଇ ସେ ଭଗବାନଙ୍କ ନିକଟରେ ଯେଉଁ ଅଙ୍ଗୀକାର କରିଛନ୍ତି, ସେ ତାକୁ ତାଙ୍କର ଜୀବନର ପ୍ରତି ରକ୍ତବିନ୍ଦୁ ଦେଇ ରକ୍ଷା କରିବେ । ରାତି ଅଗ୍ରସର ହେଉଛି । ବନ୍ଧୁଙ୍କ ଚକ୍ଷୁରେ ନିଦ ନାହିଁ ।

ନର୍ତ୍ତକୀକୁ ସେ କିଛି କହିନାହାନ୍ତି । ଦିନସାରା ଘୁରିଘୁରି କ୍ଳାନ୍ତ ହୋଇ ସେ ଯେ ସନ୍ଧ୍ୟା ଆଠଟାରେ ଶୋଇପଡ଼ିଛି, ତାର ନିଦ ଭଙ୍ଗିନାହିଁ । ତାକୁ ନିଦରୁ ଉଠାଇବାର ସାହସ ବନ୍ଧୁ ପାଉନାହାନ୍ତି । ରାତ୍ରି ଅଗ୍ରସର ହେବା ସଙ୍ଗେ ସଙ୍ଗେ ତାଙ୍କ ସ୍ନାୟୁରେ ଓ ରକ୍ତରେ ସେ ଯେପରି ମତ୍ୟୁର ଶୀତଳତା ଅନୁଭବ କରୁଛନ୍ତି । କରତଳ ଶୀତଳ । ପ୍ରାଣରେ ଉତ୍ତାପ ମରିଆସୁଛି । ଆକାଶରେ ଚନ୍ଦ୍ର ନିଷ୍ପ୍ରଭ ହୋଇଆସୁଛି । ବନ୍ଧୁଙ୍କର ଅବସନ୍ନ ଚକ୍ଷୁ ମୁଦିଆସେ..ରାତି ଆଉ ଅଧଘଣ୍ଟା ବାକୀ ।"

ଭଦ୍ରଲୋକ ନୀରବ ହେଲେ । ଟେବୁଲ ଉପରେ ଗୋଡ଼ ଥୋଇ ସେ ଚେୟାରର ଗର୍ଭରେ ନିଜକୁ ବିସ୍ତୃତ କରି ଆଖି ବୁଜିଲେ । ପାହାନ୍ତି ଥଣ୍ଡା ପବନରେ ଆଖିପତା ଲାଗିଆସୁଛି । ଆକାଶରୁ ଜହ୍ନ ନିଭିଗଲାଣି ।

କେତେବେଳ ଏଇପରି କଟିଗଲା ଜାଣିପାରିନାହିଁ । ଆଖି ଲାଗି-ଯାଇଥିଲା ବୋଧହୁଏ । ନିଦ କୁହର ଭିତରେ ଯେପରି ଗୋଟାଏ ମୋଟର ଷ୍ଟାର୍ଟ ହେବାର ଆବାଜ ଶୁଣିଲି । ପୁଣି ସବୁ ଗୋଳେଇ ହୋଇଗଲା । ତା'ପରେ ଆଉ କିଛି ଜାଣେ ନାହିଁ । ପୁଣି ତନ୍ଦ୍ରାଭାବ କଟିଗଲା—କିଏ ଠିଆ ହୋଇ ଡାକୁଛି, 'ହଜୁର, ହଜୁର !'

ଭଦ୍ରଲୋକ ବିଳିବିଳେଇ ଉଠିଲେ ଓ ତା'ପରେ ଚମକିଲାପରି ପାଟି-କରି ଉଠିଲେ, "କ୍ୟା ? ଓ, ରହମନ୍, କ୍ୟା, କ୍ୟା ବାତ୍ ?"

ରହମନ୍ କହିଲା, "ହଜୁର, ଓ ଯୋ ମିସି ସାହେବ ଆୟେଥୀ, ଓ୍ୱ ମୋଟର ଲେକେ କହାଁ ଚଲଗୟୀ ।"

ଭଦ୍ରଲୋକ ଚେୟାରରୁ ଛିଟିକି ପଡ଼ିଲେ, " କବ୍ ?"

"ଅଭି, ହଜୁର" ରହମନ ଉତ୍ତର ଦେଲା ।

ଭଦ୍ରଲୋକ ବୁଲିପଡ଼ି ମୋ ଆଡ଼କୁ ହାତ ବଢ଼ାଇ କହିଉଠିଲେ, "ଆପଣଙ୍କ ଗାଡ଼ିର ଚାବି ?"

"ଏଇ ଯେ" କହି ମୁଁ ମୋଟର ଚାବି ଭଦ୍ରଲୋକଙ୍କ ହାତରେ ଦେଲି ।

ଭଦ୍ରଲୋକ ଦୌଡ଼ି ଦୌଡ଼ି ଯାଇ ମୋ ଗାଡ଼ିରେ ଷ୍ଟାର୍ଟ ଦେଲେ– ଗର୍ଜନ କରି ଗାଡ଼ି ବାହାରିଗଲା ।

ରହମନ ଗ୍ଲଲିଯାଇଛି । ଜୀନ୍ ବୋତଲ, ଗ୍ଲାସ ଚୁରମାର ହୋଇ ତଳେ ପଡ଼ିଛି । ମଟରର ଗର୍ଜନ ଦୂରରେ ହଜିଯାଉଛି । ପୂର୍ବ ଆକାଶରେ ଶୁକ୍ର ଦପ୍ ଦପ୍ କରି ଜଳୁଛି । ଗଛଡାଳରେ କେଉଁ ଗତିଜଗା ଚଢ଼େଇ ଡେଣା ଫଡ଼ ଫଡ଼ କରି ଉଠୁଛି । ଦୂରରେ ଦିଗ୍‌ବଳୟ କ୍ରମେ ସ୍ୱଚ୍ଛ ହୋଇ-ଆସୁଛି ।

ଯନ୍ତ୍ରଚାଳିତ ପରି ମୁଁ ବି ବଙ୍ଗଳାର ଫାଟକ ପାର ହୋଇ ରାସ୍ତାରେ ଚାଲିଛି । ରାସ୍ତାରେ ପଥର ଉପରେ ଚଟି ବାଜୁଛି । କେତେ ସମୟ ଏମିତି ଚାଲୁଥିଲି ଜାଣେ ନାହିଁ । ଅନିଦ୍ରା, ଜୀନ୍ ଓ କଡ଼ା ଚୁରୁଟ ମୁଣ୍ଡରେ କାମ କରୁଛି । ଖିଆଲ ହେଲା ଯେତେବେଳେ ବୁଝିଲି, ଗୋଡ଼ ଆଉ ସମତଳ ଭୂମିରେ ପଡ଼ୁନାହିଁ–ରାସ୍ତା ଉପରକୁ ଉପରକୁ ଚଢ଼ିଯାଇଛି । ମନେପଡ଼ିଲା ଘାଟ୍‌ଟି ଆସି ପହଞ୍ଚିଲିଣି । କିଛି ସମୟ ଉପରକୁ ଚଢ଼ିଛି, ଚମକିପଡ଼ିଲି ।

ଆଗରେ ମୋ ଗାଡ଼ି । ଭଦ୍ରଲୋକ ନାହାନ୍ତି । ଆହୁରି ଉପରକୁ ଚଢ଼ିଲି । ଚାରିଆଡ଼ ଉଜ୍ଜ୍ୱଳ ହୋଇଉଠିଲାଣି । ଆଖି ମଳି ଚାହିଁ ଦେଖିଲି, ଘାଟ୍‌ର ରାସ୍ତାଧାରରେ ଭଦ୍ରଲୋକ ଗୋଟାଏ ଗଛରେ ଭରାଦେଇ ଠିଆ ହୋଇଛନ୍ତି । ଛାତି ଉପରେ ହାତ ଛକ ହୋଇ ରହିଛି । କପାଳରେ ଶିରା ଧକ୍ ଧକ୍ କରୁଛି । ଆଖି ଘାଟ୍‌ର ନିମ୍ନଦେଶରେ ନିବଦ୍ଧ । ତାଙ୍କର ଦୃଷ୍ଟି ଅନୁସରଣ କରି ଘାଟ୍‌ଧାର ଉପରୁ ଝୁଙ୍କିପଡ଼ି ଚାହିଁଲି....

ଦୂରରେ..ପ୍ରାୟ ପଚାଶ ଫୁଟ ତଳେ ଗୋଟାଏ କାର୍ ଭାଙ୍ଗି ଚୁର୍‌ମାର୍ ହୋଇ ପଡ଼ିଛି ଓ ଅଦୂରରେ ଛିଟିକି ହୋଇ ପଡ଼ିଛି ଏକ ରମଣୀ ମୂର୍ତ୍ତି । ରକ୍ତର ସୁଅ ବୋହିଯାଉଛି । ଗାଡ଼ିର ଭଗ୍ନସ୍ତୂପରୁ ବାଙ୍କିବାଙ୍କି ଉଠୁଛି ଧୂଆଁର କୁଣ୍ଡଳୀ ।

ପୂର୍ବପଟର ଆକାଶ ଅଦ୍ଭୁତ ଭାବରେ ଲାଲ ହୋଇଉଠିଛି ।

# କାମଧେନୁ

ଅନ୍ୟମନସ୍କ ଥିଲି ବୋଧହୁଏ । ତା' ନ ହେଲେ ଅଫିସରୁ ଫେରି ଯେଉଁ ଚା' ଖାଇଲି ସେଥିରେ ଖାଣ୍ଟି ଗାଈକ୍ଷୀରର ସର ଭସୁଥିଲା, ଯେଉଁ ସନ୍ଦେଶ ଖାଇଲି ତା' ଘରତିଆରି—ଏଭଳି ଅଭିନବ ପରିସ୍ଥିତିରେ ମୁଁ ବିସ୍ମୟରେ ହତବାକ୍ ନ ହେଲି କିପରି ? ଗତ କେତେ ମାସ ଧରି କିଣାକ୍ଷୀରରେ ଚା' ଖାଇବା ଯେତେବେଳେ ଅସମ୍ଭବ ହୋଇପଡ଼ିଲା, ଅଭ୍ୟାସ କଲି କାଗଜି-ଲେମ୍ବୁ ଦେଇ ଚା', ଯା'ର ଏକ ପୋଷାକୀ ନାମକରଣ କରାଗଲା 'ରସିଆନ୍ ଟି' । ବନ୍ଧୁବାନ୍ଧବ ଆସିଲେ ପାଟିକରି ବରାଦ କଲି, 'ଏୟ୍, ଚାରି କପ୍ ରସିଆନ୍ ଟି ଆଣ ତ !'

କଂସପୁରୀରେ ହରିନାମ ପରି, ଆମ ଘରର ଏଭଳି ପରିପ୍ରେକ୍ଷୀରେ କ୍ରିମ୍ ଟି, ଘରତିଆରି ସନ୍ଦେଶ ! ସେ ତ ସନ୍ଧ୍ୟାବେଳର କଥା । ରାତିରେ ଡିନର ସଙ୍ଗେ ଘନ ରବିଡ଼ି ଯେତେବେଳେ ପରିବେଷଣ କରାଗଲା,

ଗୃହିଣୀଙ୍କଆଡ଼େ ମୁଗ୍‌ଧ ଦୃଷ୍ଟିରେ ଚାହିଁଲି । ରସନା ତୃପ୍ତ ହେବା ସଙ୍ଗେ ସଙ୍ଗେ ହୃଦୟ ବିଗଳିତ ହେଲା । ରସନାପଥ ଦେଇ ହୃଦୟର ଗୁପ୍ତଦ୍ୱାର ଯେ ଏତେ ସହଜଲବ୍‌ଧ, ଏଇ ରହସ୍ୟଟା ଯଦି ସମଗ୍ର ଗୃହିଣୀକୁଳର ଚେତନାରେ ପ୍ରବେଶ କରାଯାଇପାରନ୍ତା ତା' ହେଲେ ଜଗତର ଦୁଃଖଦୁର୍ଦ୍ଦଶାରୁ ଅଧେ ଲାଘବ ହୋଇପାରନ୍ତା ।

ଛାଇନିଦ ଲାଗିଯାଇଥିଲା ବୋଧହୁଏ । ପାଖ ଖଟରୁ ଗୃହିଣୀଙ୍କ ଡାକରେ ଚେଇଁଉଠିଲି । "ଏୟ୍‌", ଗୃହିଣୀଙ୍କ କଣ୍ଠରେ ବେଶ୍ କୌତୁକ, "ଗୋଟେ ଗପ ଶୁଣିବ ? ବଡ଼ ମଜାର ଗପ ।"

"କି ଗପ ?"

"ଗାଈ ଗପ ।"

"କି ଗାଈ ?"

"ଚମ୍ପା ।"

"ଚମ୍ପା ?"

"ହଁ, ଚମ୍ପା, ଗାଈର ନାମ । ସେଇ ଚମ୍ପାଗପ କହୁଛି । ମଜାର ଗପ । ତୁମେ ପରା ଗପ ଫପ ଲେଖ । ମନଦେଇ ଶୁଣିବ ।"

ମନଦେଇ ଶୁଣିବାକୁ ଚେଷ୍ଟା କଲି ।

ଗୃହିଣୀ ଆରମ୍ଭ କଲେ –

"ଆମ ଗାଁରେ ଗୋଟେ ବୁଢ଼ା ଗଉଡ଼ ଥାଏ, ତା ନାଁ ରତନା । ତାକୁ ଆମେ ରତନା ଦାଦା ବୋଲି ଡାକୁଁ । ଆମକୁ ସେ ଭାରି ଭଲ ପାଏ । କେତେ କାଖେଇଛି, କୋଡ଼େଇଛି; କେତେ ଦୁଧ, ଛେନା, ଘିଅ ଖାଇବାକୁ ଦେଇଛି । ମନେପଡ଼ୁଛି, ଠେକି ଉପରେ ଠେକି ରଖି ସେ ଯେତେବେଳେ ତା' ଶିକା ଆଣି ଆମ ଘର ପିଣ୍ଡାରେ ଥୋଏ, ଆମେ ସବୁ ଭାଇଭଉଣୀ ତାକୁ ଘେରିଯାଉଁ । କିଏ ତା' ପିଠିରେ ଝୁଲିପଡ଼େ, କିଏ କୋଳରେ । ରତନାଦାଦା ଦେହରୁ ଯେମିତି ଖାଲି ଦୁଧ, ଦହି, ଘିଅର ଗନ୍ଧ ବାହାରୁଥାଏ । ରତନା ଦା' ଦହିର ବାସନା ଅଲଗା । ତା' ଘିଅର ଗନ୍ଧ ଘରସାରା ମହକିଯାଏ ।

"ସେଇ ରତନା ଦାଦାର ଗୋଟିଏ ବୋଲି ଝିଅ; ଆଉ କେହି ନାହିଁ । ତା ସ୍ତ୍ରୀ କେଉଁଦିନରୁ ମରିଯାଇଛି । ଝିଅକୁ ଭରି ଯତ୍ନ କରି ବଢ଼ାଇଥାଏ । ଝିଅଟି ମଧ୍ୟ ବେଶ୍ ବାଗର, ବେଶ୍ ସୁନ୍ଦର । ଝିଅ ପଛକୁ ରତନାଦା'ର ଆଦରର ଜିନିଷ ତା' ଗାଈ ଚମ୍ପା । କି ଗାଈ ସେ ! ଏମିତି ସୁନ୍ଦର ସୁଧାର ଗାଈ ମୋ ଜନ୍ମରେ ମୁଁ ଦେଖିନାହିଁ । ଏବେଳା ସେବେଳା ମିଶି ଚମ୍ପାଠାରୁ ଚାରିସେର କ୍ଷୀର ଦୁହେଁ ରତନାଦା' । ତା' ଛଡ଼ା ଆଉ ଗୋଟେ ଦି'ଟା ଗାଈ ବି ରଖିଥାଏ । କିନ୍ତୁ ଏ ଚମ୍ପାକୁ ନିଜ ଛୁଆ ଭଳି ଯତ୍ନ କରେ । ହାତରେ ଖୋଇଦେବ, ଗାଧୋଇଦେବ; ଚମ୍ପା ଦେହରେ ଟିକିଏ କେଉଁଠି ଦାଗ ଲାଗିଲେ କାନି ଦେଇ ପୋଛିଦେବ । ଚମ୍ପାକୁ ନେଇ କେତେ ଥର ଆମ ଘରକୁ ଆସିଛି ରତନା ଦା' । କି ସ୍ନେହରେ ସେ ଚମ୍ପାକୁ ଆଉଁସି ଦେଉଥିବ, ଖୁଆଇ ଦେଉଥିବ । କି ସୁନ୍ଦର ଲାଗେ ଦେଖିବାକୁ ଏ ଦୁଇ ପ୍ରାଣୀଙ୍କୁ—ଯେମିତି ବାପଝିଅ ।"

ଘଡିଅଧରେ ଏଇ ଶୃଙ୍ଖଳ ଗଉଡ଼ ଓ ଗାଈ ଗପ ଶୁଣିବାରେ ମୋର କୌଣସି ଆଗ୍ରହ ନ ହେବାର କଥା; ନ ଥିଲା ମଧ୍ୟ ! କେବଳ ମଧ୍ୟେ ମଧ୍ୟେ ହୁଁ ହାଁ କରି ଚଳାଇନେଉଥାଏଁ । ଗୃହିଣୀ କହି ଚାଲିଛନ୍ତି—

"ରତନାଦା' ଝିଅର ବାହାଘର ହେଲା । ଝିଅ ସାଙ୍ଗରେ ଚମ୍ପାକୁ ପଠାଇଦେଇ ତା' ଦୁଧବିକା କାରବାର ସେ ଗୋଟାଇଆଣିଲା । ଗୋଟେ ପେଟ ତ ! ତା' ଛଡ଼ା ବୁଢ଼ା ହୋଇଗଲାଣି । ଆଉ କାହାରି ଦାୟିତ୍ୱ ନେଇପାରିବ ନାହିଁ । ଆଉ ଗୋଟେ ଦି'ଟା ଗାଈଙ୍କୁ କେଉଁଠି ବିକିଦେଇ ନିଶ୍ଚିନ୍ତରେ ବସିବ । ଯାହା ଦି'ପଇସା ହାତରେ ଅଛି ସେଥିରେ ପେଟ ଅପୋଷା ରହିବ ନାହିଁ ।"

"ଏମିତି ଚାଲୁଥିଲା । ମୁଁ ସେତେବେଳେ ବାହା ହୋଇ ତୁମ ଘରକୁ ଆସିଲି । ରତନାଦା'ର ଆଉ କିଛି ଖବର ରଖି ନ ଥିଲି । ଗତବର୍ଷ ଶୁଣିଲି, ରତନାଦା' ଝିଅର ଶଶୁର ଓ ତା' ପରେ ପରେ ତା'ର ସ୍ୱାମୀ ହଇଜାରେ ଜଣକ ପରେ ଜଣେ ମରିଗଲେ । ସାବତ ଶାଶୁ ଘର ଛାଡ଼ି

ଆସି କଟକରେ ରହିଲା । ପରେ ଶୁଣୁଛି, ଦ୍ୱିତୀୟ ହେଲା ନା! କ'ଣ ! ରତନାଦା' ଝିଅ ରହିଲା ସେଇ ଗାଁରେ । ଶଶୁର ଓ ସ୍ୱାମୀର ଦଶାହ କ୍ରିୟାକର୍ମ ପାଇଁ ଯେଉଁ ଟଙ୍କା କରଜ କରିଥିଲା ତାକୁ ଧୀରେ ଧୀରେ ଚମ୍ପାର କ୍ଷୀର ବିକ୍ରିକରି ଶୁଝୁଥିଲା । କିନ୍ତୁ ସାବତ ଶାଶୁ ସେ କଥା କରାଇଦେଲା ନାହିଁ, ଗାଈକୁ ଜବରଦସ୍ତି ନେଇଆସିଲା କଟକକୁ କ୍ଷୀର ଲୋଭରେ । କ୍ଷୀର ବିକି ବେଶ୍ ଲାଭ କରୁଥିଲା । କିନ୍ତୁ ଆଶ୍ଚର୍ଯ୍ୟର କଥା, ଯେଉଁ ଗାଈ ଚାରି ସେର ସାଢ଼େ ଚାରି ସେର କ୍ଷୀର ଦେଉଥିଲା, ତା' କମି କମି ସେରେ ତିନିପା'ରେ ପହଞ୍ଚିଲା । ଗାଈଟା ଯେପରି ଶୁଖି ଶୁଖି ଗଲା । କିଛି ଖାଇଲା ନାହିଁ । ଶେଷରେ କ୍ଷୀର ଛାଡ଼ିଗଲା ।"

"ତା' ପରେ ସେ ଗାଈ କେଉଁଆଡ଼େ ଚାଲିଗଲା । କେହି ଖୋଜିଲେ ନାହିଁ କି ଲୋଡ଼ିଲେ ନାହିଁ । ରତନାଦା' ସେତେବେଳେ ଯାଇ ପୁରୀରେ । ଗାଁରେ ତା' ଝିଅର ଅବସ୍ଥା କହିଲେ ନ ସରେ । ଯେଉଁ ମହାଜନ ଟଙ୍କା ଧାର ଦେଇଥିଲା ସେ ବାକୀ ମୂଳ ମିଶାଇ କୋରକନାମା ବାହାର କଲା ।"

ଏ ଗପ ଆଉ ଶୁଣିବାକୁ ମୋର ଧୈର୍ଯ୍ୟ ନ ଥିଲା । ଗପର ମଜାଟା କେଉଁଠି ବୁଝିହେଉନାହିଁ । ଆଖିପତା ଲାଗିଆସୁଥିଲା । ହୁଁ ହାଁ ବୋଧହୁଏ କ୍ରମେ ଅସ୍ପଷ୍ଟ ହୋଇଆସୁଥିଲା । ଗୃହିଣୀଙ୍କ ଧମକରେ ପୁଣି ଚେଇଁଉଠିଲି । ଗୃହିଣୀଙ୍କ କଣ୍ଠ ଆହୁରି ନିବିଡ଼ ହୋଇଉଠିଛି । ଗପ ଚାଲିଛି

"ଦିନେ ଉଦୁଉଦିଆ ଦି'ପହରବେଳେ ରତନାଦା' ଆମ ଏଇ ଘରକୁ ଆସି ମୋତେ ଡାକିଲା । ତା' ମୁହଁ କଳା ପଡ଼ିଯାଇଛି । ବଡ଼ ବିକଳ ଦେଖାଯାଉଛି ।

'ନାନୀ, ତୁ ମୋତେ ରକ୍ଷା କର ।'

"ବୁଢ଼ାକୁ ହାତ ଧରି ବସାଇଲି, ପାଣି ଢାଳେ ଆଣି ଦେଲି । ମୁହଁରେ ଆଖିରେ ପାଣି ଛାଟି ଢକ ଢକ କରି ପାଣି ପିଇଗଲା । ତା'ପରେ ସାଷ୍ଟମ ହୋଇ କହିଲା, ସେ ସକାଳୁ ଧବଳେଶ୍ୱର ଯାଇଥିଲା ଦିଅଁ ଦର୍ଶନ ପାଇଁ ।

ଫେରିବା ବାଟରେ ଦେଖିଲି, ପଠାରେ ଗୋଟାଏ ଗାଇ ପଡ଼ିରହିଛି । ପାଖରେ ବାଛୁରୀ । ଶାଗୁଣା ଘେରିଯାଇ ଗାଇପେଟରୁ ପୁଳା ପୁଳା ମାଂସ ଖୁମ୍ପି ନେଇଯାଉଛନ୍ତି । ଝର ଝର ରକ୍ତ ବୋହିପଡ଼ୁଛି । ପାଖକୁ ଯାଇ ଚିହ୍ନିଲି ତା ଚମ୍ପାକୁ । ଦଉଡ଼ିଲି ନିଜ ଘରକୁ । ମଣିଷ ଓ ଶଗଡ଼ ନେଇ ଚମ୍ପାକୁ ଓ ତା' ବାଛୁରୀକୁ ନେଇ ଆସିଲି । ଗାଇର ମରମର ଅବସ୍ଥା । ପଶୁ ଡାକ୍ତର ଆଣି ଦେଖାଇଲି, ଔଷଧ ଦେଲି । ଚମ୍ପା ଉଠି ଠିଆ ହେଲାଣି । ଡାକ୍ତର କହୁଛନ୍ତି, ଆଉ ଭୟ ନାହିଁ ।

'ନାନୀ, ତୁ ଚମ୍ପାକୁ କେତେ ଭଲ ପାଉଥିଲୁ । ତାକୁ ତୁ ଆଣି ତୋ ପାଖରେ ରଖ । ଦିନ କେଇଟାରେ ଭଲ ହୋଇଯିବ । ସେର ସେର କ୍ଷୀର ଦେବ । ତୋର କ୍ଷୀର ଅଭାବ ରହିବ ନାହିଁ । ତୋ'ରି ହାତରେ ତା' ଜୀବନ ରହିବ । ଆଉ ସବୁ କଂସେଇ, ତାକୁ ମାରିପକାଇବେ । ଭଉଣୀଟା ପରା, ତୁ ମୋ ଚମ୍ପାକୁ ବଞ୍ଚା' ।"

ଏହା ପରେ ମୋର ଆଉ ଚେତା ନ ଥିଲା । ନିଘୋଡ଼ ନିଦରେ ମୁଁ ସଂଜ୍ଞାହୀନ । ଗପଶୁଣାର ସେଇଠି ଇତି ।

ମାସେ ଖଣ୍ଡେ ପରେ ଦିନେ ସକାଳେ ବାଥ୍‌ରୁମରେ ବେସିନ ଆଗରେ ଛିଡ଼ା ହୋଇ ଖିଅର ହେଉଥିଲି । ଝରକା ଦେଇ ଦୃଷ୍ଟି ପଡ଼ିଗଲା ଅଗଣାରେ ବନ୍ଧା ହୋଇଥିବା ଗୋଟାଏ ଗାଇ ଉପରେ । ଈଷତ୍ ନାଲି ରଙ୍ଗ । ଅସ୍ଥିଚର୍ମସାର ହେଲେ ବି ଚମଡ଼ାଟା ଭାରି ଉଜ୍ଜ୍ୱଳ, ସୂର୍ଯ୍ୟକିରଣରେ ଚିକ୍ ଚିକ୍ କରୁଛି । ପେଟ ଉପରେ ଗୋଟାଏ ଗଭୀର କ୍ଷତଚିହ୍ନ । ସ୍ତନଭାଣ୍ଡ ଖୁବ୍ ସ୍ଫୀତ । ସେଥିରେ ମୁହଁ ଲଗାଇ ବାଛୁରୀ ପିଉଛି । ପାଖରେ ପିତଳ ବାଲତି ଥୁଆ ହୋଇଛି । ଜଣେ କିଏ ଠିଆ ହୋଇଛି; ଗାଇ ଦୋହିଁଲାବାଲା ଗଉଡ଼ ବୋଧହୁଏ ।

ସବୁ କଥା କ୍ରମେ ସ୍ପଷ୍ଟ ହୋଇଉଠିଲା । ଗାଇ ଏ ଘରେ ରଖାଯିବ-ନାହିଁ ବୋଲି ଯେଉଁ ଦୃଢ଼ ସଂକଳ୍ପ କରିଥିଲି ତାକୁ ଭାଙ୍ଗିଦେବାର ଏକ

ଷଡ଼ଯନ୍ତ୍ର ଗ୍ରଲିଛି ତା' ହେଲେ । ସେଦିନ ମଝିଗତିରେ ଜବରଦସ୍ତି ଗାଈଗପ ଶୁଣାଇବା ପଛରେ ଯେଉଁ ଦୀର୍ଘମିଆଦି ପରିକଳ୍ପନା ଖଞ୍ଜାଯାଇଥିଲା, ତା କ୍ରମେ ସ୍ପଷ୍ଟ ହୋଇଆସିଲା । ଗୋଟେ ନୁହେଁ, ଦି'ଟା ନୁହେଁ, ତିନି ତିନିଟା ଗାଈ—ଜାତିଆ ଗାଈ, ଦାମୀ ଗାଈ । ଗୋଟାଏ କେଉଁଆଡ଼େ ଗଲା ଯେ ତାର ପତ୍ତା ମିଳିଲା ନାହିଁ । ଆଉ ଗୋଟାଏ ମଲା ଫାଟ୍ଲୁଆ ରୋଗରେ । ଶେଷଟା, ଯେଉଁଟା ସବୁଠାରୁ ଦୁଧିଆଳୀ ଗାଈ, ଇଲେକ୍‌ଟ୍ରିକ୍ ତାରରୁ ସକ୍ ଲାଗି ତା'ର ପ୍ରାଣ ଗଲା । ପ୍ରତିଜ୍ଞା କରିଥିଲି—ଯେତେ ଯାହା ହେଉ ପଛକେ ଏ ଘରେ ଗାଈ ରଖାଯିବ ନାହିଁ । ଗୃହିଣୀଙ୍କୁ ବୁଝାଇଦେଇଥିଲି, ଆମ ରାଶିରେ ଗାଈ ଉଧାଇବେ ନାହିଁ । ତୁମେ ଗୋମାତାଙ୍କୁ ଏ ଘରକୁ ବାନ୍ଧିଆଣି ଆଉ ଅପରାଧର ଅଂଶୀଦାର ହୁଅ ନାହିଁ । ସେ ଠିକ୍ ବୁଝିଯାଇଥିଲେ । ତା' ପରେ କ୍ରମେ କ୍ରମେ ଦୁଧ, ଦହି, ଛେନା, ଘିଅ ସବୁ ଗୋଟାକ ପରେ ଗୋଟାଏ ଏ ଘରୁ ଅନ୍ତର୍ଦ୍ଧାନ ହେଲେ । ଶେଷରେ ବଜାରରୁ କିଣା ଯେତେ କ୍ଷୀର ଢାଳିଲେ ବି ଚା'ର ରଙ୍ଗ ବଦଳିଲା ନାହିଁ । ଅତଏବ ଲେମ୍ବୁ ଚା' ବା 'ରସିଆନ ଟି'ର ଆଶ୍ରୟ ନିଆଯାଇଥିଲା, ଯେଉଁ କଥା ଆଗରୁ କହିଛି ।

କିନ୍ତୁ ଏଭଳି ଏକ ଗଭୀର ଷଡ଼ଯନ୍ତ୍ରର ସମ୍ମୁଖୀନ ହେବାକୁ ମୁଁ ପ୍ରସ୍ତୁତ ନ ଥିଲି । କିମ୍ ଟି, କଫି, ରବିଡ଼ି ଓ ସନ୍ଦେଶ ସତ୍ତ୍ୱେ ମୁଁ ସ୍ପଷ୍ଟ ଭାବରେ ଗୃହିଣୀଙ୍କୁ ଜଣାଇଦେଲି—"ନା, ତା ହୋଇପାରେ ନା । ଯଦି ବୁଢ଼ୀଟା ପ୍ରତି ଦୟା ହେଉଛି, ପଚାଶ ଶହେ ଦେଇପାର । ମାସେ ହେଲା ତ ଦୁଧ ଖାଇଲଣି । କିନ୍ତୁ ଗାଈ ରଖିବା..ତା କଦାପି ସମ୍ଭବ ନୁହେଁ ।"

ଏ କଥା ରତନା ଶୁଣିଲା । ଆଖିରୁ ଲୁହ ପୋଛି କହୁଥିବାର ଶୁଣିଲି, "ନାନୀ, ଝିଅଟାର ଘରବାଡ଼ି କୋରକରେ ଉଠିଛି । ତୋ ଛୁଆ ଦୁଧ ଖାଇଥାନ୍ତେ; ସେଇ ଟଙ୍କାରେ ଝିଅର ଋଣ ଶୁଝିଦେଇ ମୁଁ ନିଶ୍ଚିନ୍ତ ହୋଇଥାନ୍ତି । କିନ୍ତୁ ବାବୁ ତ ମନା କରୁଛନ୍ତି । ମୋ ମୁଣ୍ଡରେ ଚଡ଼କ ପଡ଼ୁଛି, କରିବି କ'ଣ ?"

ଠିକ୍ ଏଇ ସମୟରେ ଆସି ପହଞ୍ଚିଲା ରତନାର ସମଦୁଣୀ—ତା' ଝିଅର ସାବତ ଶାଶୂ । ଲମ୍ବ ଓଢ଼ଣା ତଳୁ ସେ ଜଣାଇଲା ତା'ର ଦାବୀ ।

ଗାଈଟା ଝିଅ ସଙ୍ଗେ ଯୌତୁକ ଦିଆଯାଇଥିଲା; ଗାଈ ତାଙ୍କର । ବୁଢ଼ାର ସେଥିରେ ସ୍ୱତ୍ୱ ଆସିଲା କେଉଁଠୁ ? ଗାଈ ନ ହେଲେ ଗାଈବିକା ଟଙ୍କା ପାଇବାର ହକଦାର ସେ; ବୁଢ଼ା ନୁହେଁ । ଗାଁରେ ଭିଟାମାଟି ରହିବ କି କୋରକ ହେବ ସେ କଥା ସେ ବୁଝିବ । ବୁଢ଼ା ମୁଣ୍ଡ କାହିଁକି ବଥାଉଛି ?

ଏ ସବୁ ବାଦବିବାଦକୁ ଯିବା ମୋର ନୀତିବିରୁଦ୍ଧ । ଗୃହିଣୀଙ୍କ ଉପରେ ମନଟା ବିରକ୍ତ ହୋଇଉଠିଲା, "ଯେତେ ସବୁ ବାହାର ଜଞ୍ଜାଳ ଆଣି ଘରେ ଭର୍ତ୍ତି କରିବା ତୁମ କାମ । ଶୁଣିଲ ତ ! ଏ ସବୁ ମାମଲା ମକଦ୍ଦମାରେ ଆସାମୀ ହୋଇ କୋର୍ଟକୁ ଯିବାକୁ ପ୍ରସ୍ତୁତ ହୁଅ । ଯେତେ କହିଲି, ଏ ଗାଈଧନ୍ଦା ଛାଡ଼..ଏବେ ବୁଝ !"

ଗୃହିଣୀ କ୍ଷୁବ୍‌ଧ କଣ୍ଠରେ କହିଲେ, "ସବୁ ଦୋଷ ତ ମୋର ! ତୁମର ଓ ତୁମ ପିଲମାନଙ୍କର ଭଲ ପାଇଁ ସିନା ମୁଁ ଗାଈ ଗାଈ ହେଉଥିଲି । ମୁଁ ଦୁଧ ଖାଏ ନା ଦହି ? ନ ହେଲା ନାହିଁ, ତୁମେ ଯା' ଠିକ୍ ବିଗ୍ରୁଛ କର । ମୋର ସେଥିରେ କ'ଣ ଯାଏଆସେ ?"

ଏ ମାନଅଭିମାନକୁ କାନ ନ ଦେଇ ମୁଁ ସ୍ପଷ୍ଟ ନିଷ୍ପତ୍ତି ଶୁଣାଇଦେଲି, "ରତନାବୁଢ଼ା ଗାଈ ଆଣିଥିଲା ସେ ନେଇଯାଉ । ତା' ସମଦ୍ଧୁଣୀକୁ ଫେରଇବ କି ନିଜେ ରଖିବ ସେ ତା' କଥା—ସେ ସମ୍ଭାଳିବ । ଯେତେ ଦିନ ଗାଈ-କ୍ଷୀର ଆମେ ଖାଇଛେ ତା' ଟଙ୍କା ହିସାବ କରି ବୁଢ଼ାକୁ ଦେଇଦିଅ ।"

ସେଇଦିନର ସନ୍ଧ୍ୟା । ବାହାରକୁ ଯିବାପାଇଁ ପ୍ରସ୍ତୁତ ହେଉଥିଲି । ଡ୍ରେସିଂ ଟେବୁଲ ଆଗରେ ବସି ମୁଣ୍ଡରେ ବ୍ରସ୍ ଚଳାଉଥିଲି, ଦୃଷ୍ଟି ପଡ଼ିଗଲା ଅଗଣାଆଡ଼େ । କୁଣ୍ଡ ଭିତରେ ମୁହଁ ବୁଡ଼ାଇ ଗାଈ ଦାନା ଖାଉଛି । ରତନାବୁଢ଼ା ବସି ହାତରେ ଦାନା ଗୋଳାଇଦେଉଛି । ଗୃହିଣୀ ଗାଈଟିକୁ ଆଉଁସି ଦେଉଛନ୍ତି । ଦି' ଆଖିରୁ ତାଙ୍କର ମମତା ଝରିପଡୁଛି । ଗାଈଟା ସେଇ ସ୍ନେହ-ସ୍ପର୍ଶକୁ ଯେପରି ମର୍ମେ ମର୍ମେ ଅନୁଭବ କରୁଛି । ପରମ ତୃପ୍ତିରେ ତା' ଆଖି ବୁଜିହୋଇପଡୁଛି । ସେ ଗୃହିଣୀଙ୍କ କୋଳ

ଭିତରକୁ ଯେପରି ଲାଗି ଲାଗି ଆସୁଛି । ତା' ପିଠିର ଲୋମଭିତରେ ଏକ ଶିହରଣ ଖେଳିଯାଉଛି । ପ୍ରାୟାନ୍ଧକାର ସନ୍ଧ୍ୟାଲଗ୍ନରେ ସେ ଏକ ଅଦ୍ଭୁତ ଦୃଶ୍ୟ । ସେଇ ମୁହୂର୍ତ୍ତରେ ମନେ ହେଲା, ସେ ଗୋଟାଏ ପଶୁ ନୁହେଁ— ସ୍ପର୍ଶକାତର ଅନୁଭୂତିପ୍ରବଣ ଏକ ମୂକ ଶିଶୁ ଯେପରି ତା' ମା'ର କୋଳ ଭିତରେ ମୁଣ୍ଡ ଗୁଞ୍ଜି କାନ୍ଦି କାନ୍ଦି ଅଳି କରି କହୁଛି, 'ନା, ମା, ମୁଁ ଯିବି ନାହିଁ, ଯିବି ନାହିଁ' । ମୋ ଆଖିର ଭ୍ରମ କି କ'ଣ କହିପାରିବି ନାହିଁ , ସ୍ପଷ୍ଟ ଯେପରି ଦେଖିପାରିଲି ଗାଈର ବଡ଼ ବଡ଼ ଆଖିରୁ ଦୁଇଧାର ଲୁହ ଗଡ଼ିଯାଉଛି ।

ସେଆଡ଼େ ଚାହିଁ ଚାହିଁ ମନେ ହେଲା, ରତନା, ଗୃହିଣୀ ଓ ଚମ୍ପା— ସେମାନଙ୍କ ଭିତରେ ଏକ ଅଦ୍ଭୁତ ମମତ୍ୱବୋଧ, ଏକ ସୁନ୍ଦର ସଂସାର ଗଢିଉଠିଛି । ସେଠି ମୋର ସ୍ଥାନ ନାହିଁ । ମୁଁ ଯେପରି ଏକ ଅଦରକାରୀ ବିଜାତୀୟ ପ୍ରାଣୀ । ଡ୍ରେସିଂ ମିରରକୁ ଚାହିଁ ଚମକିଉଠିଲି । ଏକ ଦୁଧ-ଦହି-ଘିଅ-ଛେନା-ଗବିଡିଲୋଭୀ ମୁହଁ ମୋ ଆଡ଼େ ମିଟ୍‌ମିଟ୍ କରି ଚାହିଁରହିଛି । ନିଜର ଏପରି କୁତ୍ସିତ କଦାକାର ରୂପ କେବେ ଦେଖି ନ ଥିଲି । ଆଖି ଫେରାଇନେଇ ଉଠିପଡ଼ିଲି । ବାହାରକୁ ଆସି ଅଗଣାର ଏକ କୋଣରେ ଯାଇ ଛିଡ଼ା ହେଲି । ହଠାତ୍ ନିଜକୁ ବଡ଼ ନିଃସ୍ୱ ଓ ସମ୍ବଳହୀନ ମନେହେଲା । ଧୀରେ ଧୀରେ କହିଲି, "ରତ୍ନାକର, ଗାଈଟା ଏଇଠି ଥାଉ, ଆମେ ରଖିବୁଁ ! ଦରଦାମ୍ ଯାହା ହେବ ନାନୀଙ୍କ ପାଖରୁ ନେଇଯା । ଝିଅ ପାଖକୁ ଯିବୁ, ତା ଦେ'ଣା ଶୁଝିଦେବୁ । ସମଦଣୀଙ୍କୁ କିଛି ଦେବୁ । ଅଧିକା ପଚାଶ ଟଙ୍କା ଦେଇଯାଉଛି ।"

# ପେଟ୍ରୋଲ

ଦିନରାତି କାମ ଚାଲିଛି । ଦୁଇଆଡ଼ ବନ୍ଧ ପୂରାପୂରି ହୋଇଯାଇଥିଲେ ବି ମଝି ଜାଗାଟା, ଯେଉଁଟା ତୋଡ଼ମୁହଁ, ସେଠି ଆହୁରି ବହୁତ ମାଟି ଦରକାର । ମାଟିକାମ ସରିଲେ ପୁଣି ତା' ଉପରେ ଏକ ପରସ୍ତ ପଥର ଛାଉଣି ଦେବା ଦରକାର ପଡୁଛି । ସେପଟ ପାହାଡ଼ପଟେ ପଥର କଟା ଚାଲିଛି, ଜଙ୍ଗଲ ସଫା ହେଉଛି । ଗଛମୂଳ ତାଡ଼ି ବାହାର କରି-ଦିଆଯାଉଛି । ନ ହେଲେ ପାଣି ଗେକିଦେବ । ବଳକା ପାଣି ଖଲାସ ନ ହେଲେ ବନ୍ଧ ସମ୍ଭାଳି ହେବ ନାହିଁ । ଆଉ ସମୟ ନାହିଁ । ବର୍ଷା ଆରମ୍ଭ ହୋଇଗଲାଣି ।

ହେଡ୍‌କ୍ୱାଟରରୁ ତିନିମାଇଲ ଦୂରରେ ପ୍ରୋଜେକ୍ଟ । ପ୍ରାୟ ଅଧମାଇଲ ଗଲେ ପଡ଼ିବ ଗୋଟେ ଅଣଓସାରିଆ ପାହାଡ଼ିଆ ନାଳ । ଉପରେ ଦି' ଅସରା ବର୍ଷା ହୋଇଗଲେ ନାଳରେ ଦି'କୂଳ ବଢ଼ି ! ନାଳ

ସେପଟୁ ପ୍ରାୟ ମାଇଲିଏ ଗଲେ ଗାଁ । ଗାଁ ମୁଣ୍ଡରୁ ଆହୁରି ଦେଢ଼ ମାଇଲ । ଜିପ୍ ଫାଷ୍ଟ ଗିଅରରେ ଗର୍ଜନ କରି ପାହାଡ଼ ଚଢି ବାଟ କାଟେ । ଶେଷରେ ଯେଉଁଠି ତିନିଟା ପାହାଡ଼ ଖଞ୍ଜା ହେଲା ପରି ଆକାଶରେ ମୁଣ୍ଡ ଛୁଆଁଇ ଛିଡ଼ା ହୋଇଛନ୍ତି ସେଇଠି ପ୍ରୋଜେକ୍ଟ ।

ସାହେବଙ୍କ ଆଖିରେ ନିଦ ନାହିଁ । ଯେମିତି ହେଉ କାମ ପୂରା କରାଯିବ । ବର୍ଷା ଆସିଗଲେ ବି ପରବାୟ ନାହିଁ । ଦିନକୁ ଦିନ କାମ ଆଗେଇଚାଲିଛି— ପନ୍ଦରଟା ଦିନରେ ମୁଣ୍ଡ ଲାଗିଯିବ । ଏ ଯେଉଁ ବର୍ଷା ହେଉଛି ସେଥିରେ ପାଣି ଆସି ବନ୍ଧକୁ ଲାଗିଲାବେଳକୁ କମ୍‌ସେ କମ୍ ଦିନ ୧୦।୧୫ ଲାଗେ । ତା' ଭିତରେ ପଥର ବିଛାଇ ଆରମ୍ଭ ହୋଇଯାଇଥିବ । ତା'ପରେ ଯେତେ ବର୍ଷା ଢାଳୁଛି ଢାଳୁ ।

ବାଟରେ ସେଇ ପାହାଡ଼ି ନାଳଟା ଅଡୁଆ କରିଥାନ୍ତା । ବର୍ଷା ଆଗରୁ ଜିପ୍‌ଟାକୁ ନାଳ ଟପାଇ ଗାଁରେ ରଖାଇଦିଆଯାଇଛି । ଡେରାଘର ସାମନାରେ ଗତାଗତି ଗେରେଜ ହୋଇଯାଇଛି ଟାଟି ଓ ଗହିଳରେ । ଜିପ ସେଇଠି ରହୁଛି । ସାହେବ ହେଡ୍‌କ୍ୱାଟରରୁ ନିଜ ଗାଡ଼ିରେ ନାଳ ପର୍ଯ୍ୟନ୍ତ ଯାଇ, ଗାଡ଼ି ଛାଡ଼ି, ନାଳ ପାରି ହୋଇ ଆରପଟରେ ଜିପ୍ ଭିତରକୁ କୁଦିପଡ଼ି ହୁଇଲ ଧରନ୍ତି....ପ୍ରୋଜେକ୍ଟ କାମ ଦେଖିସାରି ସେଇ ନାଳ ପର୍ଯ୍ୟନ୍ତ ଫେରିଆସି ଜିପ୍ ଛାଡ଼ିଦିଅନ୍ତି । ଡ୍ରାଇଭର ଜିପ ଫେରାଇନେଇ ଗାଁରେ ଡେରାଘର ସାମନା ଗେରେଜରେ ରଖିଦେଇ ଚାଲି ଚାଲି ହେଡ୍‌କ୍ୱାଟର୍ସକୁ ଫେରେ ।

ସେଦିନ ସକାଳୁ ମେଘ ଧରିଛି । ସାହେବଙ୍କ ମୁହଁ ଅପ୍ରସନ୍ନ । ଟେବୁଲ ଉପରେ ପ୍ରୋଜେକ୍ଟର ବ୍ଲୁ-ପ୍ରିଣ୍ଟ ମେଲା ହୋଇଛି । ଇଞ୍ଜିନିୟର ବାବୁ ପେନସିଲ ମୁଣ୍ଡ ଚଳାଇ କିତିକିତା କରି ବୁଝାଇ ଚାଲିଛନ୍ତି ବନ୍ଧର ଅଗ୍ରଗତି । ଏକ ସମୟରେ ସାହେବ ଚେୟାର ଛାଡ଼ି ଉଠିପଡ଼ିଲେ ଓ ଡାକ ଦେଲେ....

"ରହମନ !"

"ହଜୁର !"

"ସାଇକେଲ ନେଇ ଜଲଦି ଚାଲିଯା–ଜିପ୍ ଆଣି ନାଳ ପାଖରେ ପହଞ୍ଚେଇଥିବ । ମୁଁ ଅଭି ବାହାରୁଛି ।"

"ହଜୁର....ଗାଡ଼ିରେ ତେଲ ନାହିଁ । ଦି' ଗେଲନର ଗୋଟେ ସ୍ଲିପ୍ ଲେଖିଦେଲେ ଷ୍ଟୋରରୁ ନେଇଯିବି ।"

ରହମନ ସ୍ଲିପ୍ ଧରି ସାଇକେଲରେ ବାହାରିଗଲା । ସାହେବ ହିସାବ କରି ଦେଖିଲେ ପ୍ରାୟ ୪୦ ମିନିଟ ପରେ ବାହାରିଲେ ଠିକ୍ ହେବ । ନାଳ ପାଖରେ ପହଞ୍ଚିଲାବେଳକୁ ରହମନ୍ ଜିପ୍ ଆଣି ଲଗାଇଦେଇଥିବ ।

ନିର୍ଦ୍ଧାରିତ ସମୟରେ ସାହେବ ନିଜ ଗାଡ଼ିରେ ହେଡ୍‌କ୍ୱାଟର୍ସ ଛାଡ଼ିଲେ । ସାଙ୍ଗରେ ଗଲେ ଇଞ୍ଜିନିୟରବାବୁ । ବାଟରେ ଥାନାରୁ ଦାରୋଗାବାବୁଙ୍କୁ ଉଠାଇନେଲେ । ମେଘ ଦେଖି ମୂଲିଆ ଭାଙ୍ଗିଯାଉଛନ୍ତି ନିଜ ନିଜ ଖେତ-ବାଡ଼ିରେ ହଳ ଚଳାଇବାକୁ । ଏଣେ ପ୍ରୋଜେକ୍ଟ ଦରକାର କରୁଛି ତିନିଗୁଣ ଲୋକ । ଗାଁ ଗାଁ ବୁଲି ମଜୁରିଆ ରୁଣ୍ଡାଇବାକୁ ହେବ । ଦେଢ଼ା ମଜୁରୀ ନେଲେ ବି ମଞ୍ଜୁର । ଦାରୋଗାବାବୁ କାମରେ ଲାଗିବେ ।

ନାଳ ଏପଟେ କାର୍ ଛାଡ଼ି ନାଳ ପାରି ହୋଇ ସମସ୍ତେ ଉପରକୁ ଉଠିଆସିଲେ । ଜିପ୍ କାହିଁ ? ସାହେବ କବଜି ଘୁରାଇ ଘଡ଼ିରେ ମିଳାଇ ଦେଖିଲେ ରହମନ କୋଠି ଛାଡ଼ିବାର ପ୍ରାୟ ୫୦ ମିନିଟ ହୋଇଗଲାଣି । ଜିପ୍‌ଟା ଆସୁଥିବାର ବି କୌଣସି ସୂଚନା ନାହିଁ । ସାଇଲେନସରଟା ଫାଟିଯାଇ ଯେଉଁ ବିକଟ ଶବ୍ଦ ବାହାରୁଛି, ତା' ତ ଦି'ମାଇଲ ଦୂରରୁ ଶୁଣାଯାନ୍ତା । ରହମନଟା ତା' ହେଲେ ଗଲା କେଉଁଆଡ଼େ !

ସାହେବ ପାଇପ ଲଗାଇ ଆଗକୁ ଗୋଡ଼ ବଢ଼ାଇଲେ । ଇଞ୍ଜିନିୟର ବାବୁ, ଦାରୋଗାବାବୁ ପଛେ ପଛେ ଚାଲିଲେ । ବର୍ଷା ଗଲାଗତିରେ

ଭଲକରି ଅସରଏ ହୋଇଯାଇଛି । ଚିକିଟା ମାଟି ଜୋତାରେ ଉଠି-ଆସୁଛି । ଗ୍ଭଲିବା ବଡ଼ କଷ୍ଟ । ରାସ୍ତା ମୋଡ଼ି ବାଙ୍କି ଆଗକୁ ଲମ୍ବିଯାଇଛି । ମହୁଲ ବଣରୁ କେମିତିକା ଗୋଟେ କଡ଼ା ଗନ୍ଧ ଉଠୁଛି । ପାଇପ୍‌ର କଡ଼ା ଧୂଆଁ ମୁଣ୍ଡକୁ ଉଠିଯାଇଛି । ସବୁ ମିଳି ଆକ୍ରୋଶ ପଡୁଛି ଯାଇ ରହମନ ଉପରେ, ବେୟାଦବ, ରାସ୍କେଲ....

ଜିପ୍‌ର ଚିହ୍ନବର୍ଣ୍ଣ ନାହିଁ ।

ଦିନ ଏଗାରଟା ହୋଇଗଲାଣି । ମେଘ କଟିଯାଇ ଖରା ଫୁଟିଗଲାଣି । ପାଣିଖରା ଗ୍ଭଇଁ ଗ୍ଭଇଁ ଲାଗୁଛି । ଆଉ କେତେଦୂର ସେ ଗାଁଟା..ଇଞ୍ଜିନିୟରବାବୁ ପାନଖିଲେ ଡବାରୁ କାଢି ମୁଁହରେ ଦେଇ ଗ୍ଭବୁଛନ୍ତି ଓ ଗ୍ଭବି ଗ୍ଭବି କାଦୁଅ ଏଡ଼ି ରାସ୍ତା ଗ୍ଭଲୁଛନ୍ତି । ଦିନକର କଥା । ରହମନ ସାଙ୍ଗରେ ଜିପ୍‌ରେ ପ୍ରୋଜେକ୍‌ଟକୁ ଯିବା ରାସ୍ତାରେ ସେଇ ଗାଁ—ତିନିଟା ଘର ଛାଡ଼ି ଉଞ୍ଚା ପିଣ୍ଡା ଉପରେ ସେଇ ଝିଅଟି....କପାଳ ଉପରେ କେରି କେରି ବାଳ..ଚିକ୍‌କଣ କଳା, ନିଦା, ପିଟା ଦେହମୁଣ୍ଡ—ଆଖି ପଡ଼ିଲେ ଫେରାଇହେବ ନାହିଁ । ରହମନର ଗାଡ଼ି ଧୀର ହୋଇଯାଏ ଏଇ ଜାଗାରେ । ମୁହଁ ବୁଲାଇ ସେଇ ଝିଅଟି ଆଡ଼େ ଗହୀରେଇକରି ଦେଖେ । ଝିଅଟା ମୁହଁରେ ହାତ ଦେଇ ମୂରକି ହସିଉଠେ । ତା'ପରେ ହର୍ଣ୍ଣ ବଜାଇ ଗାଁ ଦାଣ୍ଡରେ ଜିପ୍‌ଟାକୁ ଜୋରରେ ଦଉଡ଼ାଇନେଇ ରହମନ ସିଟ୍‌ରେ ଆଉଜି ବସି ବିଡ଼ି ଧରାଏ । ଆଜି ସେଇ ଝିଅଟି ପାଖରେ ଅଟକି ଯାଇନାହିଁ ତ ଖାମଖିଆଲି ଟୋକାଟା !

ଡେରାଘରେ ପହଞ୍ଚିଲାବେଳକୁ ସାହେବଙ୍କ ଅବସ୍ଥା କାହିଲ୍ । ମୁହଁରୁ ମୁଣ୍ଡରୁ ଗମ ଗମ ଝାଳ ବୋହୁଛି, କାମିଜ୍‌ଟା ଓଦା ସର ସର । ଜୋତା ଯୋଡ଼ାକ କାଢ଼ି ଫୋପାଡ଼ିଦେଇ ପିଣ୍ଡାରେ ଗୋଟେ ହାତଭଙ୍ଗା ଚୌକିଉପରେ ବସିପଡ଼ିଲେ । ଇଞ୍ଜିନିୟରବାବୁ ଡେରାଘର ଭିତରୁ ବାହାର-କଲେ ଏକ ସାଢ଼େତିନିଫୁଟିଆ ଦଉଡ଼ା ଖଟ ଓ ସେଥିରେ ବସି ନିଜ ହ୍ୟାଟ୍‌ରେ ବିଞ୍ଚିହେଲେ । ଦାରୋଗାବାବୁ ବାଟରୁ ଗାଁ ଭିତରକୁ ଗ୍ଭଲିଯାଇଛନ୍ତି ଗୌନ୍ତିଆ ଘରଆଡ଼େ ।

ଜିପ୍‌ଟା ତାଟିଘର ଭିତରେ ପଡ଼ିରହିଛି । ରହମନର ପତ୍ତା ନାହିଁ । ଦାରୋଗାବାବୁ ଗୌନ୍ତିଆ ବୁଢ଼ାକୁ ସାଙ୍ଗରେ ନେଇ ଫେରିଲେ । ନାଃ, ସେ ବି ଦେଖିନାହାନ୍ତି ରହମନକୁ । ଗୌନ୍ତିଆ ଜାଣେ ନାହିଁ, ଚୌକିଦାର ଦେଖିନାହିଁ—କେହି ଦେଖିନାହାନ୍ତି । ତା'ହେଲେ ଲୋକଟା ବିଲକୁଲ ଆସିନାହିଁ । ଅଥଚ ସାହେବ ନିଜେ ତାକୁ ପଠାଇଥିଲେ ପ୍ରାୟ ଦେଢ଼ ଘଣ୍ଟା ତଳେ । ଆଦୌ ବୋକା ନୁହେଁ, ନୋ ସ୍କ୍ରେପ୍ ବଦମାସୀ । ପଗ୍ଭରିଲେ ନାନା ମିଛକଥା କହିବ..ପେଟ ମାରିଲା....ସାଇକଲ ଏକସିଡେଣ୍ଟ ....ନାଃ,ଆଜି ଏଇଠି ଲୋକଟା ବିଷୟରେ ଗୋଟାଏ ନିଷ୍ପତ୍ତି କରିବାକୁ ହେବ....ନାଓ଼ଁ ଏଣ୍ଡ ହିଅର ।

ଇଞ୍ଜିନିୟରବାବୁ ଅନେକବେଳୁ କଥାଟାଏ କହିବେ ବୋଲି ମୁଣ୍ଡ କାନ ଆଉଁସିହେଉଥିଲେ । ହଠାତ୍ କହିପକାଇଲେ, "ଷ୍ଟୋରବାବୁ ବୁଢ଼ାଟା ବି, ସାର୍, ବେଳେବେଳେ ବଡ଼ ଗୋଳମାଳ କରେ । ସେଦିନ ସେମିତି ଆମେ ବାହାରିଛୁ ପ୍ରୋଜେକ୍‌ଟକୁ....ଷ୍ଟୋରବାବୁ ମନା କରିଦେଲା— ଷ୍ଟୋରରେ ଠୋପେ ତେଲ ନାହିଁ । ଦଉଡ଼ିଲୁ ସେଠୁ ଷ୍ଟେସନ ପମ୍ପକୁ । ବାହାରୁ ବାହାରୁ ଘଣ୍ଟେ ପାର୍....

"ନନ୍‌ସେନ୍‌ସ !" ପାଇପ୍ ତଳୁ ସାହେବଙ୍କର ହୁଙ୍କାର ଶୁଣାଗଲା ! ସମସ୍ତେ ଚୁପ୍ ।

ଏତିକିବେଳେ ଏକ ଘଟଣା ଘଟିଲା । ଦାରୋଗାବାବୁ ପାଟିହଲା ।କରି ଡେଗଘର ଭିତରୁ ବାହାରିଆସିଲେ । ହାତରେ ଗୋଟେ ନାଲି ପେଟ୍ରୋଲ ଟିଣ ।

"ଦେଖିଲେଣି ସାର୍, ପୂରା ଏକ ଟିଣ ତେଲ ଏଇଠି ରହିଛି । ଅନ୍ଧାରିଆ ଜାଗାରେ ଲୁଚାହୋଇ ରଖାଯାଇଛି ।" ତେଲଟିଣାଟାକୁ ଦୂମ୍ କରି ତଳେ ଥୋଇଦେଇ ବିଜୟ ଉଲ୍ଲାସରେ ସାହେବଙ୍କ ଆଡ଼େ ଥରେ

ଗୁହିଁଦେଇ ଇଞ୍ଜିନିୟରବାବୁଙ୍କ କାନ୍ଧରେ ଟିପ ମାରି କହିଲେ–"ଆଜ୍ଞା, ଗତିଦିନ ଆମର କାମ ହେଲା ଏୟା..ଆମ ଆଖିରେ ଧୂଳି ଦେବା ଏତେ ସହଜ ନୁହେଁ । ବହୁତ ଦିନରୁ ଏଇ ଟୋକାଟା ଉପରେ ଆମେ ଆଖି ରଖିଛୁଁ । ଖାଲି ଆପଣମାନଙ୍କ ଖାତିରିରେ....

ଗାଁ ଦାଣ୍ଡ ମୁଣ୍ଡରେ ଦେଖାଗଲା କିଏ ଜଣେ ଆସୁଛି । ପେଣ୍ଟ ଆଣ୍ଠୁ ପର୍ଯ୍ୟନ୍ତ ମୋଡ଼ା ହୋଇଛି....ସାଇକଲଟାକୁ କାଦୁଅଭିତରେ ଠେଲି ଠେଲି ଆଣୁଛି । ସାଇକଲ ଚକା ଗଡୁନାହିଁ । ପରସ୍ତ ପରସ୍ତ କାଦୁଅ ଭିଜିଯାଇଛି ଚକା ଗୁରିପଟେ । ଗୋଟିଏ ହାତରେ ପେଟ୍ରୋଲ ଟିଣ, ଆର ହାତରେ ହେଣ୍ଡଲ, ଲାଇଟବ୍ରାକେଟରୁ ଝୁଲୁଛି ଫିତାଦେଇ ବନ୍ଧା ଦି'ପଟ ଜୋତା ।

ଡେରଘର ଭିତରୁ ଆବିଷ୍କାର କରିଥିବା ଟିଣଟାକୁ ଖପ୍ କରି ଉଠାଇ-ନେଇ ଦାରୋଗା ଘରଭିତରକୁ ପଶିଯାଇ ରଖିଦେଇଆସିଲେ । ସମ୍ବ୍ରାଉନ ବେଲ୍ଟ ଉପରେ ବାଁ ହାତ ରଖି କାଖ ଭିତରେ ବେଟନ୍‌ଟାକୁ ଗୁଞ୍ଜିଦେଇ ତୀକ୍ଷ୍ଣ ଦୃଷ୍ଟିରେ ଆଗକୁ ଗୁହିଁରହିଲେ ।

ସାହେବ ଉତ୍ତେଜନାବଶରେ ହଠାତ୍ ଚେୟାରରୁ ଉଠି ପୁଣି କଣ ଭାବି ବସିପଡ଼ିଲେ । ତାଙ୍କ ଚଉଡ଼ା କପାଳରେ ଦି'ଟା ନେଳି ଶିଗ ଧକ ଧକ କରୁଛି । ରହମନ ପାଖେଇଆସୁଛି । ଡେରଘର ପିଣ୍ଡାରେ କେମିତି ଗୋଟାଏ ଥମ ଥମ ଭାବ । କଣ ଗୋଟାଏ ଘଟିଯିବ ଏଇ ଘଡ଼ିକେ !

ଖୁଣ୍ଟରେ ସାଇକଲ୍ ଡେରିଦେଇ ରହମନ ପେଟ୍ରୋଲ ଟିଣଟା ଧରି ଜିପ ପାଖକୁ ସିଧା ଗଲା । ଜିପ୍‌ର ପଛପଟୁ ବାହାର କଲା ଫନେଲ । ପେଟ୍ରୋଲ ଟାଙ୍କିର କେପ୍ ଫିଟାଇ ଫନେଲ ଲଗାଇଲା ଓ ଟିଣରୁ ତେଲ ଅଜାଡ଼ିଲା ଫନେଲ ଭିତରକୁ । ଗଜ୍ ଗଜ୍ ହୋଇ ସଫେଦ ପେଟ୍ରୋଲ ଅଜାଡ଼ି-ହୋଇ ପଡୁଛି । ବାଁ କାନ୍ଧ ଈଷତ୍ ଉଠାଇ ପୋଛିହେଲା କାନମୂଳିରୁ ଝାଳ । କେଉଁଆଡ଼କୁ ଦୃଷ୍ଟି ନାହିଁ ।

ସମସ୍ତେ ଏକଦୃଷ୍ଟିରେ ଦେଖୁଛନ୍ତି—ସାହେବ, ଇଞ୍ଜିନିୟର, ଦାରୋଗା ବାବୁ, ଚୌକିଦାର । ସମସ୍ତେ ଅଣନିଶ୍ୱାସୀ ହୋଇ ଅପେକ୍ଷା କରି ରହିଛନ୍ତି ପରମହୂର୍ତ୍ତକୁ । ପେଟ୍ରୋଲ ଟିଣରୁ ଯେତେବେଳେ ବିଲକୁଲ ସରିଯିବ.. କେପ୍ ବନ୍ଦ କରି ଖାଲି ଟିଣ ଥୋଇଦେଇ ରହମନ ଯେତେବେଳେ ଗାଡ଼ିରେ ଷ୍ଟାର୍ଟ ଦେବାକୁ ବାହାରିବ—ଠିକ୍ ସେତିକିବେଳେ ଆଗେଇଯିବେ ଦାରୋଗା ବାବୁ ।

ପେଟ୍ରୋଲ ଢାଳିସାରି, ଟେଙ୍କ୍‌ର କେପ୍ ବନ୍ଦ କରି ଖାଲି ଟିଣଟା ହାତରେ ଝୁଲାଇ ରହମନ ଦାରୋଗାବାବୁଙ୍କ ପାଖ ଘଷି ପଶିଗଲା ଡେରଘର ଭିତରକୁ ଓ ସଙ୍ଗେ ସଙ୍ଗେ ଫେରିଆସିଲା । ହାତରେ ବୋଝେଇ ଟିଣ ।

ସାହେବ ଚେୟାରରୁ ଛିଟିକି ପଡ଼ିଲେ । ଦାରୋଗାବାବୁ ଦି ହାତରେ ବେଲ୍‌ଟ୍‌ଟାକୁ ସଜାଡ଼ିନେଇ ଜିପ୍‌ପାଖକୁ ଝପଟିଗଲେ । ଇଞ୍ଜିନିୟରବାବୁ ହାତଘଡ଼ି ଦେଖିଲେ—କେତେବେଳୁ ବନ୍ଦ ହୋଇଯାଇଛି ।

ଜିପ୍‌ର ରେଡିଏଟର କେପ୍‌ଟା କ୍ଷିପ୍ର ହାତରେ ରହମନ ଘୁରାଇ ଫିଟାଇ-ନେଲା ଓ ଟିଣଟାକୁ ଓଲଟାଇ ଧରିଲା ରେଡିଏଟରର ଠିକ୍ ମୁହଁକୁ ଲଗାଇ । ବର୍ଷାଦିନର ଢାଉଆ ରଙ୍ଗର ପାଣି ଅଜାଡ଼ି ହୋଇପଡ଼ିଲା, ପେଟ୍ରୋଲ ଟିଣ ଭିତରୁ ଜିପ୍‌ର ତୃଷିତ ଗର୍ଭତଳକୁ ।

,

# ଝଣ୍ଟିଆଭୂତ

କାଳୀବାବୁ ମୋର ଅକୃତ୍ରିମ ହିତାକାଂକ୍ଷୀ । ଅବସର ସମୟରେ ମୁଁ କେବେକେବେ କିଛି ଲେଖାଲେଖି କରୁଥିଲି । ପତ୍ରପତ୍ରିକାରେ ମୋର ଗପ ବାହାରିଲେ ବା ରେଡିଓରେ କେବେ ମୋ ଗପ ବ୍ରଡ୍‌କାଷ୍ଟ କରଗଲେ ସଙ୍ଗେ ସଙ୍ଗେ ନିଶ୍ଚୟ ଆସିବ କାଳୀବାବୁଙ୍କଠାରୁ ଏକ ପ୍ରଶଂସାପତ୍ର । ସେ ଚିଠିରେ ହେଉ ବା ଟେଲିଫୋନ ମାଧ୍ୟମରେ ହେଉ–"ଭରି ଭଲ ଲଗିଲ ତୁମର ଗପଟା । କିନ୍ତୁ ଶେଷବେଳକୁ ଏତେ ଚିପିଦେଲ କାହିଁକି ? ଆଉ ଟିକେ ସୂତା ଛାଡ଼ । ସୂକ୍ଷ୍ମ ବିଗ୍ଭର ରହୁ; କିନ୍ତୁ ତା ସାଙ୍ଗକୁ ଆଉ ଟିକେ ଆଲୋକ, ଆଉ ଟିକେ ସ୍ୱଚ୍ଛତା ଦରକାର ହେଉଛି । ସେ ଯାହା ହେଉ, ତୁମ ହାତରେ ମିଠା ଅଛି । ମୁଁ ସ୍ପଷ୍ଟ ଦେଖିପାରୁଛି ଟେଲେଣ୍ଟ । ତୁମର ଦୋଷ ହେଉଛି, ତୁମେ ଭରି କମ୍ ଲେଖ । ଅଭ୍ୟାସ ରଖ । ଅଭ୍ୟାସ ଅଭବରୁ, କେବଳ ହେଲାରୁ କେତେ କେତେ ପ୍ରତିଭ ନଷ୍ଟ ହୋଇ-ଯାଉଛି ।"

ଏମିତି କେତେ କଥା, କେତେ ଉତ୍ସାହ ଓ ପ୍ରରୋଚନାର ବାଣୀ କାଳୀବାବୁ ଶୁଣାନ୍ତି । ଚିଠି ବା ଫୋନରେ ହେଉ ବା ସଭସମିତି, ଘଣ୍ଟା-ଘାଟ ଯେଉଁଠି ଦେଖା ହେଲେ ତାଙ୍କର ଓ ମୋ ଭିତରେ ସେଇ ଗୋଟିଏ ପ୍ରସଙ୍ଗ ।

ମୁଁ ସ୍ୱଭବତଃ ଆଳସ୍ୟପରାୟଣ । ବସିବାର ସୁବିଧା ଥିଲେ ମୁଁ ଠିଆ ହୋଇ ରହିବାକୁ ପସନ୍ଦ କରେ ନାହିଁ, ବା ଶୋଇବାର ସୁଯୋଗ ମିଳିଲେ ମୁଁ ବସି ରହିବାକୁ ମୂର୍ଖତା ବୋଲି ମନେକରେ । ଅତଏବ କାଳୀବାବୁଙ୍କର ଅଗାଧ ପ୍ରରୋଚନା ଓ ଉଦ୍ଦୀପନା ସତ୍ତ୍ୱେ ଓ ମୋ'ଠି ସାହିତ୍ୟିକର ସମସ୍ତ ଲକ୍ଷଣ ତାଙ୍କ ଆଖିରେ ଦେଖାଦେଉଥିଲେହେଁ ମୁଁ ଯେ କାହିଁକି ଏପରି କଦବା କ୍ୱଚିତ୍ ଗପ ଲେଖୁଥିଲି ତା ମୂଳରେ ଏଇ ଆଳସ୍ୟପରାୟଣତାର ଅବଦାନ ଅନସ୍ୱୀକାର୍ଯ୍ୟ ।

କାଳୀବାବୁଙ୍କ ପ୍ରଭବ ହେତୁ ହେଉ ବା ମୋର ପ୍ରତିଭା ବିଷୟରେ ବାରମ୍ବାର ପ୍ରଶସ୍ତି ଶୁଣି ଶୁଣି ଗୋଏବ୍‌ଲ୍‌ସ-ପ୍ରଚାର-ପଦ୍ଧତି-ନ୍ୟାୟରେ ମୋର ସେ ବିଷୟରେ କ୍ରମବର୍ଦ୍ଧମାନ ଆତ୍ମଚେତନା ଯୋଗୁ ହେଉ, ଏକ କାଳରେ ମୋର ଲେଖାଲେଖିର ହାର କିଞ୍ଚିତ୍ ପରିମାଣରେ ବୃଦ୍ଧି ପାଇଯାଇଥିଲା, ଯାହା ଫଳରେ କାଳୀବାବୁ ମୋତେ ଓ ଅନ୍ୟ କେତେ ଜଣ ଖ୍ୟାତିସମ୍ପନ୍ନ ସାହିତ୍ୟିକଙ୍କୁ ତାଙ୍କ ଘରେ ଏକ ଭେଜି ଦେଇ ସର୍ବସମ୍ମତିକ୍ରମେ ଏକ ପ୍ରସ୍ତାବ ପାସ୍ କରାଇନେଇଥିଲେ ଯେ ମୋର କେତେ ବଛା ବଛା ଗପକୁ ଅନ୍ୟ ଭଷାରେ ଅନୁବାଦ କରାଇ ଏକ ଗଳ୍ପ-ସଞ୍ଚୟନ ପ୍ରକାଶ କରାଯିବ ।

ସାହିତ୍ୟିକ ସିଢ଼ିରେ ମୁଁ ଯେତେବେଳେ ଧାପେ ଧାପେ ଉପରକୁ ଉପରକୁ ଉଠିଆସୁଥିଲି, ଏକ ଦୁର୍ଘଟଣା ଘଟିଗଲା; ମୋ ଲେଖାଲେଖିରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । କାରଣଟା ନିତାନ୍ତ ବ୍ୟକ୍ତିଗତ ଓ ଗୋପନୀୟ । କାହାରିକୁ କିଛି ନ କହି ମୁଁ ଧୀରେ ଧୀରେ ନିଜକୁ ଅପସରି ନେଲି । ପତ୍ରପତ୍ରିକାମାନଙ୍କଠାରୁ ଗପ ପାଇଁ ଯେଉଁ ଅନୁରୋଧପତ୍ର ଆସିଲା

ତା'ର ଉତ୍ତର ଦେଲିନାହିଁ । ସାହିତ୍ୟସଂକ୍ରାନ୍ତ ସଭସମିତି ବର୍ଜନ କଲି । ସାହିତ୍ୟିକ ବୋଲଉଥିବା ବ୍ୟକ୍ତିମାନଙ୍କୁ ଦେଖିଲେ ଏକ ଅଦ୍ଭୁତ ଆତଙ୍କ ବୋଧ କଲି । ମୋର ନୂଆ ଗଳ୍ପ ସଂକଳନର ଯେଉଁସବୁ ସୁଚିନ୍ତିତ ଯୋଜନାମାନ କରଯାଇଥିଲି ସେସବୁ ବାତିଲ୍ କରିଦେଇ ନିଜର ଉଦରପୂର୍ତ୍ତି-ବୃତ୍ତିରେ ମନୋନିବେଶ କଲି ।

ଏହା ମଧ୍ୟରେ କାଳୀବାବୁଙ୍କ ଚିଠି ଓ ଫୋନ୍ ଯେ ନ ଆସିଛି ତାହା ନୁହେଁ ; କିନ୍ତୁ ନାନା କୌଶଳ ପ୍ରୟୋଗ କରି ତାଙ୍କୁ ସବୁ ଏଡ଼ାଇଗଲି । ନିଜ କଣ୍ଠକୁ ବିକୃତ କରି ଫୋନ୍‌ରେ କହିଲି, "ଓ, ସେ ତ ନାହାନ୍ତି । ବାଥ୍ ରୁମରେ ଅଛନ୍ତି । କିଏ କହୁଥିଲେ ? ଓ, ଆଚ୍ଛା, ମୁଁ କହିଦେବି" ଇତ୍ୟାଦି ଇତ୍ୟାଦି ।

ସେଦିନ ରବିବାର । ସକାଳ । ଦାଣ୍ଡଘରେ ଖବରକାଗଜ ଧରି ବସିଥିଲି । ହଠାତ୍ ଦେଖିଲି, କାଳୀବାବୁଙ୍କ ରିକ୍ସା ଆସି ଲାଗିଲା । ମୁଁ ଜାଣେ କାଳୀବାବୁ କାହିଁକି ଆସିଛନ୍ତି । ମନେ ମନେ ଆତଙ୍କିତ ହେଲେ ବି ମୁହଁରେ ହସ ଫୁଟାଇ ତାଙ୍କୁ ଅଭିବାଦନ କରି ଆଣି ବସାଇଲି । ସେ କିଛି କହିବା ପୂର୍ବରୁ ନାନା ବିଷୟରେ ଆଗତୁରା ଅବତାରଣା କଲି । କଫି, ସିଗ୍ରେଟ, ପାନ ଆଣି ତାଙ୍କ ଆଗରେ ଥୋଇଲି । ବାଗୁଲ ପରି ଅନେକ କଥା କହିଗଲି; ଅଯଥା ଗୁଡ଼ାଏ ହସିଲି । ଘନ ଘନ ସିଗ୍ରେଟ ଲଗାଇ ଧୂଆଁ ଛାଡ଼ିଲି । କିନ୍ତୁ କାଳୀବାବୁ ଗମ୍ଭୀର । ତାଙ୍କ ମୁହଁରେ ପୂର୍ବର ସରସତା ନାହିଁ । କଥାକଥାକେ ରସିକତା ନାହିଁ । ଶେଷରେ ମୋ ହାତକୁ ତାଙ୍କ ହାତ ଭିତରକୁ ନେଇ ମୋ ଆଖି ଭିତରକୁ ନିରିଖେଇ ଚାହିଁ କହିଲେ, "ଲେଖାଲେଖି ଏକବାରେ ଛାଡ଼ିଦେଲ, ନା ? କ'ଣ ଦୋଷ କଲା ସେ ତୁମର ?"

ତାଙ୍କ କଣ୍ଠରେ କେବଳ ଆନ୍ତରିକତା ନୁହେଁ । ତା ସଙ୍ଗେ କେମିତି ଗୋଟାଏ କରୁଣ କରୁଣ ସ୍ୱର । ତାଙ୍କୁ ପ୍ରଥମେ ଦେଖିଲାବେଳୁ ଯା' ଗୋଟେ କହିଦେବି ବୋଲି ଯେଉଁ ଆଣ୍ଠୁ ମନେ ମନେ ବାନ୍ଧିଥିଲି ତା ତାଙ୍କର ଏଇ କଥା

ପଦକରେ କେମିତି ଭାଙ୍ଗିଗଲା । ମିଛ କହିବାକୁ ଜିଭ ଲେଉଟିଲା ନାହିଁ । କାହିଁକି କେଜାଣି ମୋ ଆଖି ଛଳଛଳ ହୋଇଆସିଲା । ମୁହଁ ତଳକୁ ପୋତି କହିଲି, "କାଳୀବାବୁ, ମୁଁ ଜାଣେ, ଆପଣଙ୍କ ମନରେ ମୁଁ ଆଘାତ ଦେଇଛି । ଆପଣ ମୋ ଗପରୁ କ'ଣ ପାଉଥିଲେ ସେକଥା ଆପଣ ଜାଣନ୍ତି । ଗପ ଲେଖି ଆପଣଙ୍କ ଭଳି କେତେଜଣଙ୍କ ମନରେ ଆନନ୍ଦ ଦେଇପାରି ମୁଁ ନିଜକୁ ଧନ୍ୟ ମନେ କରୁଥିଲି । ଆପଣଙ୍କ ଆନ୍ତରିକତା ଓ ପ୍ରେରଣାରେ ମୁଁ ଏଭଳି ପ୍ରଭାବିତ ହୋଇପଡ଼ିଥିଲି ଯେ ମୁଁ ଗପ ଲେଖି ସାହିତ୍ୟସେବା କରିବାକୁ ମୋ ଜୀବନର ବ୍ରତ ବୋଲି ଗ୍ରହଣ କରିବାକୁ ବାହାରିଥିଲି ।"

"ମନେପଡୁଛି ଅନେକ ଦିନ ତଳର କଥା । ସେତେବେଳେ ମୁଁ ସଦ୍ୟ କଲେଜଫେରନ୍ତା ଯୁବକ । ଏକ ବୃଦ୍ଧ ସଙ୍ଗୀତଜ୍ଞ ମହାପୁରୁଷଙ୍କ ସାନ୍ନିଧ୍ୟରେ ଆସିଥିଲି । ଗୋରା ତକତକ ଲମ୍ବା ଚେହେରା । ଚଉଡ଼ା କପାଳ । ତା ଉପରକୁ ଲମ୍ବା କୁଞ୍ଚୁକୁଞ୍ଚିଆ ଧଳା ବାଳ ପରିପାଟିରେ କୁଣ୍ଡା ହୋଇ ପଛପଟକୁ ପଡ଼ିଥାଏ । ମୁହଁ ଭର୍ତ୍ତି ଲମ୍ବା ଧଳା ଦାଢ଼ି । ଆଖି ଯୋଡ଼ିକରେ ଏକ ଅପୂର୍ବ ଜ୍ୟୋତି । ରାତି ଏଗାରଟାବେଳେ ଯେତେବେଳେ ଚାରିଆଡ଼ ନିସ୍ତବ୍ଧ ହୋଇଯାଏ, ସେ ସେତାର ନେଇ ବସନ୍ତି । ସେସବୁ ଉଚ୍ଚାଙ୍ଗ ରାଗ ବୁଝିବାର ଶକ୍ତି ସାମର୍ଥ୍ୟ ମୋର ବା କାହୁଁ ଆସିବ ! ଅଥଚ ତାଙ୍କ ସେତାରରୁ ନିଃସୃତ ସେଇ ସ୍ୱରଝଙ୍କାର ମୋ ଚେତନାରେ ପ୍ରବେଶ କରି ମୋତେ ଅଭିଭୂତ କରିପକାଏ । ଘଣ୍ଟା ଘଣ୍ଟା ଧରି ତାଙ୍କର ସେ ସଙ୍ଗୀତ ଝଙ୍କାର ମନ୍ତ୍ରମୁଗ୍ଧ ହୋଇ ଶୁଣୁଶୁଣୁ ମୁଁ ନିଜକୁ ହଜାଇଦିଏ । ଶେଷରେ ଯେତେବେଳେ ସେ ଆଖି ଖୋଲି ଚାହାନ୍ତି, ମୁଁ ସ୍ପଷ୍ଟ ଅନୁଭବ କରେ ଯେପରି ସେ କେଉଁ ଅଦୃଶ୍ୟ ଲୋକରୁ ଓହ୍ଲାଇଆସୁଛନ୍ତି । ଦିନେ ସେ କହିଥିଲେ, 'ବାବା, ସଙ୍ଗୀତ ଏକ କଠୋର ସାଧନା । ଜୀବନର ଶ୍ରେଷ୍ଠ ଅଂଶ ମୁଁ ଏଇ ସାଧନାରେ ଉତ୍ସର୍ଗ କରିଦେଇଛି । ଯା!' ପାଇଲି ତା' ଅତି ସାମାନ୍ୟ । ଆହୁରି ବହୁଦୂର ଯିବାକୁ ଅଛି । ଗୋଟିଏ ଜୀବନରେ ନ ହେଲେ ତା' ବହୁ ଜୀବନରେ ସଫଳ ହେଉ ।' ତା' ପରେ ହସିଉଠି ଗାଇ ଉଠିଥିଲେ– 'ସେ କି ସହଜେ ମିଳିବା ଧନ ରେ, ତାକୁ ଅଳପେ ପାରିବୁ ଧରି..

"କାଳୀବାବୁ, ସେକଥା ମନେପକାଇଲବେଳକୁ ମୋର ରୋମାଞ୍ଚ ହେଉଛି । ମୁଁ ଯେତେବେଳେ କିଛି ଲେଖିବାକୁ କଲମ ଧରେ, ମୋ ଆଖି ଆଗରେ ଭସିଉଠେ ସେହି ମହାନ୍ ସାଧକଙ୍କର ଅପରୂପ ମୂର୍ତ୍ତି । ମନେହୁଏ, ସେ ଯେପରି ଏକ ଦ୍ୱିତୀୟ ଭଗବାନ୍ । ସତ୍ୟ ଶିବ ସୁନ୍ଦରର ଯେ ସ୍ରଷ୍ଟା ସେଇ ତ ଭଗବାନ୍‌ପଦବାଚ୍ୟ । ସଙ୍ଗୀତ ହେଉ, ସାହିତ୍ୟ ହେଉ, ବା ଯେକୌଣସି ସୃଷ୍ଟିକ୍ଷେତ୍ରରେ ଯେ ସର୍ବତୋଭବେ ଆତ୍ମବିନିଯୋଗ କରେ ତା'ରି ପ୍ରେରଣାର ଉତ୍ସ ଭଗବତ୍ ଶକ୍ତି । ମୋର କ୍ଷେତ୍ର ସାହିତ୍ୟ ସେବା । ମୁଁ ସାହିତ୍ୟ ବିଷୟରେ ଅଦ୍ଭୁତ ସ୍ୱପ୍ନ ସବୁ ଦେଖେ । ସେଇ ବୃଦ୍ଧ ସଙ୍ଗୀତଜ୍ଞଙ୍କ ପରି ମୁଁ ଜଣେ ସାଧକ ହେବି । ସଂସାରର ସମସ୍ତ ବନ୍ଧନରୁ ମୁକ୍ତ ହୋଇ ମୁଁ ନିଜକୁ ସଂପୂର୍ଣ୍ଣଭବରେ ଉତ୍ସର୍ଗ କରିଦେବି ସାହିତ୍ୟ ସାଧନାରେ । ମୁଁ ସୃଷ୍ଟି କରିବି ଅମର ସାହିତ୍ୟ ।"

କାଳୀବାବୁଙ୍କ ମୁହଁରେ ହସ ଫୁଟିଲା । ଥଣ୍ଡା ହୋଇଯାଉଥିବା କଫିକୁ ଉଠାଇନେଇ ସେ ଦି' ଢ଼ୋକ ପିଇ କୌତୁକ କରି କହିଲେ, "ବାଃ, ବାଃ, ଏ ତ ଚମତ୍କାର ସ୍ୱପ୍ନ ।" ତାଙ୍କ କଣ୍ଠରେ ପୂର୍ବର କୌତୁକ ଫେରିଆସିଛି, "କିନ୍ତୁ ସେ ସ୍ୱପ୍ନର ଜୁଆରରେ ଏତେ ଭଟ୍ଟା କାହିଁକି ? ଏକସିଲରେଟର ଛାଡ଼, ଗାଡ଼ି ଦୌଡ଼ୁ—ଏତେ ବ୍ରେକ୍ କଷିଲେ ବାହନ ବିକଳ ହୋଇପଡ଼ିବ ।"

କହିଲି, "ସେଇ କଥା କହିବି ବୋଲି ତ ଏତେ ଗୌରଚନ୍ଦ୍ରିକା; କିନ୍ତୁ ଆପଣ ଯିବାକୁ ତରବର ହେଲେ ହେବ ନାହିଁ । ଆରାମ କରି ବସନ୍ତୁ । ଆଉ କପେ ଗରମ କଫି ଖାଆନ୍ତୁ । ସିଗ୍ରେଟ ଧରନ୍ତୁ । ସବୁ କହିବି, ମୋର ସବୁଠୁ ଯା' ଗୋପନୀୟ କଥା ।"

କଥା ମୁତାବକ କାର୍ଯ୍ୟ । ଆହୁରି କଫି, ଆହୁରି ସିଗ୍ରେଟ ଆସିଲା । ରବିବାରର ସକାଳ ଗଡ଼ି ଗ୍ଲଲିଲା । ଭିତରପଟ କବାଟ ଲଗାଇଦେଇ ଆସି ଘନ ହୋଇ ବସିଲି । ପଗ୍ଲରିଲି, "ଆଚ୍ଛା, ଆପଣ ବିଶ୍ୱଜିତ୍ ଦାସଙ୍କୁ ଜାଣନ୍ତି ନା ?"

କାଳୀବାବୁ—କିଏ, କବି ବିଶ୍ୱଜିତ୍ ? ତାଙ୍କୁ ପୁଣି ନ ଜାଣେ କିଏ ! କି ଚମତ୍କାର କବିତା ଲେଖନ୍ତି ! କି ଅପୂର୍ବ ଶବ୍ଦବିନ୍ୟାସ ! ହଁ, ତାଙ୍କ ସଙ୍ଗେ ମୋର ଘନିଷ୍ଠ ପରିଚୟ ଅଛି । କାହିଁକି, କହିଲ ?

ମୁଁ—ନା, ନା, କିଛି ନୁହେ ଯେ, ମୁଁ ବି ତାଙ୍କର ଜଣେ ବଡ଼ ସ୍ତାବକ । ପତ୍ରପତ୍ରିକା ହାତକୁ ଆସିଲେ ପ୍ରଥମେ ସୂଚୀପତ୍ରରୁ ଦେଖିନିଏ କବି ବିଶ୍ୱଜିତ୍‌ଙ୍କ କବିତା ଅଛି କି ନାହିଁ । ଥିଲେ ଆଗେ ଖୋଲିପକାଏ ସେ କବିତା । ଥରେ ନୁହେଁ, ଦି'ଥର ନୁହେଁ, ବହୁବାର ପଢ଼େ । ପଢି ବନ୍ଧୁମାନଙ୍କୁ ଶୁଣାଏ । ଭରି ଭଲ ଲଗେ ତାଙ୍କର ପ୍ରତ୍ୟେକ କବିତା ।

କାଳୀବାବୁ—ତାଙ୍କର ଆଉ ଗୋଟିଏ ଗୁଣ ତାଙ୍କର ବାଗ୍ମିତା । ସଭସମିତିରେ ତାଙ୍କର ବକ୍ତୃତା ଶୁଣିଥିବ । ଭରି ସୁନ୍ଦର କହିପାରନ୍ତି ସେ । ଗୋଟାଏ ବୋଲି ଅବାନ୍ତର କଥା ନ ଥିବ, ପ୍ରତ୍ୟେକଟି ଶବ୍ଦ ମାର୍ଜିତ, ସୁଚିନ୍ତିତ । ସଂଯତ କଣ୍ଠ, ସୁନ୍ଦର ବାଚନଭଙ୍ଗୀ । ପ୍ରତ୍ୟେକଟି ବକ୍ତୃତା ଗୋଟିଏ ଗୋଟିଏ କବିତା ପରି । କବି ବିଶ୍ୱଜିତ୍‌ଙ୍କ ବକ୍ତୃତା ଶୁଣିବାର ସୁଯୋଗ ମିଳିଲେ ମୁଁ ସବୁ କାମ ଛାଡ଼ି ସଭକୁ ନିଶ୍ଚୟ ଯିବି ବା ରେଡିଓ ଖୋଲି ବସିବି । ଗୁଣୀ ଲେକ ।

ହସିଉଠି କହିଲି, "ସେଇ କବି ସୁବକ୍ତା ଖ୍ୟାତିମାନ୍ ବିଶ୍ୱଜିତ୍ ଆମ ଗାଁର, ଆମର ନିକଟତମ ପଡ଼ିଶା । ତାଙ୍କର ସୁନ୍ଦର ଦୋତାଲା ଘରଟି ଆମ ଘରର ଲଗାଲଗି । ମଝିରେ କେବଳ ତାଙ୍କର ବଗିଚ୍ଚ । ତାଙ୍କର ପ୍ରତିବେଶୀ ହିସାବରେ ଆମର ସେ କି ଗର୍ବ, ଗୌରବ ! କାଳୀବାବୁ, ସେଇ ବିଶ୍ୱଜିତ୍‌ଙ୍କ ଗପ ଆଜି ଆପଣଙ୍କୁ କହିବି ।"

"ଗତ ଗ୍ରୀଷ୍ମଛୁଟିରେ ଗାଁକୁ ଯାଇଥିଲି । ଜ୍ୟେଷ୍ଠମାସର ଦ୍ୱିପ୍ରହର । ଉପରତାଲା ମୋର ଏକ ଛୋଟ କୋଠରୀରେ ଖଟଉପରେ ପଡ଼ିରହି

କ'ଣସବୁ ବହିପତ୍ର ପଢୁଥିଲି । ଉତ୍ତରପଟର ଗୋଟେ ଝରକା ଈଷତ୍ ମୁକୁଳା । ବାହାରେ ଝାଞ୍ଜି ପିଟୁଛି । ଗ୍ରିଆଡ଼ ନୀରବ, ନିସ୍ତବ୍ଧ । ହଠାତ୍ ଦୃଷ୍ଟି ପଡ଼ିଲା, ଦୂରରୁ ଆସୁଛି ଗୋଟିଏ ବାରଚୌଦ ବର୍ଷର ପିଲା । ଖାଲି ଦେହ, ଅଣ୍ଟାରେ ଗୁଡ଼େଇଦେଇଛି ଲୁଗାକାନି, ହାତରେ ଖଣ୍ଡେ ବାଉଁଶ ଛଡ଼ି ନା କ'ଣ । ଅନେକଟା 'ପଥେର ପାଞ୍ଚାଲୀ'ର ଅପୁ ଭଳି । ରାସ୍ତାଟା ତାହି ନିଆଁ ଅଙ୍ଗାର, ତା' ଉପରେ ସେ ଡେଇଁ ଡେଇଁ ଆସୁଛି ।"

"ଦେଖୁଥାଏଁ । ପିଲାଟି ଆହୁରି ନିକଟବର୍ତ୍ତୀ ହେଉଛି । କବିଙ୍କ ହତା ବାଡ଼ରେ ଗୋଟିଏ ଜାମରୋଳ ଗଛ । ସେଥିରେ ବଡ଼ ବଡ଼ ଜାମରୋଳ ଛାଇ ହୋଇଯାଇଛି । ପିଲାଟି ସେଇ ଗଛମୂଳେ ଟିକେ ଛିଡ଼ାହୋଇ ଗ୍ରିଆଡ଼କୁ କନ୍‌କନ୍ କରି ଗ୍ରହିଁଲା । ତା'ପରେ ଲୁଗାକାନିଟାକୁ ଜଂଘ ଉପରକୁ ଟେକି ଭିଡ଼ିଦେଇ ଗଛ ଉପରକୁ ଉଠିଗଲା ।"

"ଭାରି କୌତୂହଳ ହେଲା । ମୁଁ ଝରକାପାଖକୁ ଉଠିଆସି ଦେଖୁଥାଏ, ପିଲାଟା ଜାମରୋଳ ତୋଳି ତା' ଅଣ୍ଟିରେ ଭରୁଥାଏ । ଅଣ୍ଟି ପୂରିଗଲା । ତା' ପରେ ଧୀରେ ଧୀରେ ଗଛରୁ ଓହ୍ଲାଇଆସି ତା' ଛଡ଼ିକୁ ହାତରେ ଧରି ଆଉ ଥରେ ଗ୍ରିଆଡ଼କୁ ଗ୍ରହିଁନେଇ ଗ୍ରଲିଲା । ମୋର ଉତ୍ତରପଟ ଝରକାରୁ ସେ କ୍ରମେ ଅଦୃଶ୍ୟ ହୋଇଗଲା ।"

"ଏଇ ସମୟରେ ଏକ ଅଦ୍ଭୁତ ଚିତ୍‌କାର ଶୁଣିଲି । ପିଲାଦିନେ 'ଯାତ୍ରା'ରେ ଶୁଣିଥିଲି ରାବଣ ଆସିଲାବେଳେ ଦୂରରୁ ଯେପରି ଏକ ରେ' ରେ' ରଡ଼ି ଛାଡ଼େ, ଅନେକଟା ସେଇପରି । ମୁଁ ମୋ ଝରକାରୁ ଦେଖିଲି କବି, ସୁବକ୍ତା, ଖ୍ୟାତିମାନ୍ ବିଶ୍ୱଜିତ୍‌ଙ୍କୁ । ତାଙ୍କରି ସଂଯତ ସୁଲଳିତ କଣ୍ଠରୁ ନିଃସୃତ ସେଇ ଗଗନଭେଦୀ ରଡ଼ି-ଚିତ୍‌କାର । ତାଙ୍କର ଦାଣ୍ଡ କବାଟ ଧଡ଼ ଧାଡ଼ ହୋଇ ଖୋଲିଗଲା । କବିଙ୍କ ପରିଧେୟ ଖଣ୍ଡେ ନେଳି ଲୁଙ୍ଗି । ସେ ଲୁଙ୍ଗିକୁ ଦି' ଭାଗ କରି ଦକ୍ଷିଣୀ ଷ୍ଟାଇଲ୍‌ରେ ଆଣ୍ଠୁ ଉପରକୁ ଟେକି

ଦେଇଛନ୍ତି । ସେ ଦୌଡ଼ୁଛନ୍ତି । ଚଟିହଳଟା ଅସୁବିଧା ସୃଷ୍ଟି କରୁଥିଲା ବୋଧହୁଏ । କିୟତ୍‌ଦୂର ଯିବାପରେ ସେ ଚଟିଯୋଡ଼ାକୁ ଫୋପାଡ଼ିଦେଇ ମୁକ୍ତ ହୋଇ ଆହୁରି ଜୋରରେ ଦୌଡ଼ିବାକୁ ଲାଗିଲେ —'ରହ, ରହ, ଟୋକା, ଯିବୁ କୁଆଡ଼େ !' ସ୍ତବ୍ଧ ମଧ୍ୟାହ୍ନରେ ସେଇ ରଡ଼ି ହୁଙ୍କାର ପ୍ରତିଧ୍ୱନିତ ହୋଇ ଚତୁର୍ଦ୍ଦିଗକୁ ବ୍ୟାପ୍ତ ହେଲା ।"

"ମୁଁ ଦକ୍ଷିଣପଟ ଝରକା ଖୋଲି ଏ ରୋମାଞ୍ଚକର ଦୃଶ୍ୟ ଦେଖିବାକୁ ଲାଗିଲି । ପିଲାଟା ଜୀବନବିକଳରେ ଦୌଡ଼ୁଛି । ପଛରେ କବି, ସୁବକ୍ତା, ଖ୍ୟାତିମାନ୍ ମହାପୁରୁଷ ଅର୍ଦ୍ଧନଗ୍ନ ଅବସ୍ଥାରେ ଅଣନିଃଶ୍ୱାସୀ ହୋଇ ଦୌଡ଼ୁଛନ୍ତି । ପ୍ରାୟ ୩୦।୪୦ ଗଜ ଧରି ଏ ଭୀଷଣ ଦୌଡ଼ ପ୍ରତିଯୋଗିତା ଚାଲିଲା । ତା' ପରେ ଯା' ଅବଶ୍ୟମ୍ଭାବୀ ତାହାହିଁ ହେଲା । କବିଗୁରୁ ସେ ପିଲାଟାକୁ ଧରିପକାଇଲେ । ତା'ପରେ ଯା' ଘଟିଲା ତା' ଅବିସ୍ମରଣୀୟ । କବି ନିଜର ବାମ ହାତକୁ ବୁଲାଇ ଏକ ବ୍ରହ୍ମଚାପୁଡ଼ା ପିଲାଟିର କର୍ଣ୍ଣମୂଳିରେ ଥୋଇଲେ । ପିଲାଟା ବୁଲି ବୁଲି ତଳେ ପଡ଼ିଗଲା । ଜାମରୋଳତକ ବିଞ୍ଚିହୋଇଗଲା । କବି ମହାଶୟ ଏଣିକି ତେଣିକି ଚାହିଁଲେ । ତପ୍ତ ଦ୍ୱିପ୍ରହରରେ ଜନମାନବର ଚିହ୍ନ ନାହିଁ । ନିଜର ନେଳି ଲୁଙ୍ଗିରେ ସବୁ କୋଳିତକ ଗୋଟାଇନେଇ କ୍ଷିପ୍ର ପଦକ୍ଷେପରେ ସେ ଫେରିଆସିଲେ । ମୁଁ ତାଙ୍କ ଗତିପଥ ଅନୁସରଣ କରୁଥାଏ । ଉତ୍ତରପଟ ଝରକା ଦେଇ ଦେଖିଲି, କବି ଯତ୍ନରେ ତାଙ୍କ ହତା ଫାଟକ ବନ୍ଦ କଲେ । ଚଟିଯୋଡ଼ାକ ଯେଉଁଠି ଫୋପାଡ଼ିଦେଇ ଯାଇଥିଲେ ତାକୁ ଗୋଡ଼ରେ ଲଗାଇ ବାକିତକ ରାସ୍ତା ଅତିକ୍ରମ କରି ଘର-ଦ୍ୱାରମୁହଁରେ ପହଞ୍ଚିଲେ । ନଉଁପଡ଼ି ନେଳି ଲୁଙ୍ଗି ପ୍ରାନ୍ତରେ ମୁହଁରୁ ଝାଳ ପୋଛିଦେଲେ । ତା'ପରେ ସଦର ଦୁଆର କବାଟ ବନ୍ଦ ହେବାର ଶବ୍ଦ । ତା'ପରେ ସବୁ ଶୁନ୍‌ଶାନ୍ ।"

"ଦକ୍ଷିଣପଟ ଝରକାରୁ ଦେଖିଲି, ରାସ୍ତାକଡ଼ରେ ସେ ପିଲାଟି ପଡ଼ି ଧକାଉଛି । ଜ୍ୟେଷ୍ଠମାସର ତପ୍ତ ମଧ୍ୟାହ୍ନର ଝାଞ୍ଜି ପିଟୁଛି । ଧୂଳି ଓ

ଶୁଖିଲପତ୍ର ଏକତ୍ର କରି ଖଣ୍ଡିଆଭୂତଟା ସେଇ ନିର୍ଜନ ରାସ୍ତାଉପରେ ଘୁରିଘୁରି ନାଚୁଛି ।"

"କାଳୀବାବୁ, ମୋତେ ଆଉ ଲେଖାଲେଖି କରିବାକୁ କହିବେ ନାହିଁ । ମୋର ସ୍ୱପ୍ନ ଭାଙ୍ଗିଯାଇଛି । ସେଇ ବୃଦ୍ଧ ସଙ୍ଗୀତସାଧକଙ୍କର ସତର୍କବାଣୀ କାନରେ ବାଜୁଛି– 'ସଙ୍ଗୀତ, ସାହିତ୍ୟ, ଏସବୁ ଗୋଟିଏ ଗୋଟିଏ ଦେବସ୍ଥାନ । କଠୋର ନିଷ୍ଠା, ସାଧନା ଓ ଆତ୍ମଶୁଦ୍ଧି ବିନା ଏ ମନ୍ଦିରରେ ପ୍ରବେଶ ନିଷିଦ୍ଧ' ।"

"ଅନ୍ତରରେ ସେ ଶୁଚିତା ଓ ଶୁଦ୍ଧିର ଅଭ୍ୟୁଦୟ ଯେପର୍ଯ୍ୟନ୍ତ ନ ହୋଇଛି, ଚେତନାରେ ସତ୍ୟ ଶିବ ସୁନ୍ଦରର ସ୍ପର୍ଶ ଯେପର୍ଯ୍ୟନ୍ତ ନ ପହଞ୍ଚିଛି, ଉପଧା ମିଳାଇ କବିତା ଲେଖିବା ବା କଥା ଖଞ୍ଜି ଗଳ୍ପ ରଚନା କରିବାଠାରୁ ବଡ଼ ଭଲ୍‌ଗାରିଟି ଓ ଭଣ୍ଡାମି ଆଉ ନାହିଁ ।"

"କାଳୀବାବୁ, ମୋତେ ଆପଣ କ୍ଷମା କରିବେ ।"

# ନିଦ୍ରା

ନିଦଟା ଅଚାନକ ଭାଙ୍ଗିଗଲା । ବଡ ଅସ୍ୱସ୍ତି ଲାଗୁଛି । ତା' ସାଙ୍ଗକୁ ଶୋଷ । ପାଖ ଟେବୁଲ ଉପରେ ଘୋଡ଼ାହୋଇ ରଖାଯାଇଥିବା ଗ୍ଲାସରୁ ଢକଢକ କରି ପାଣିତକ ପିଇଗଲି । ଘଡ଼ିରେ ଦେଖିଲି, ରାତି ଗୋଟାଏ ବାଜି କୋଡ଼ିଏ କି ବାଇଶ ମିନିଟ । ଥରେ ଶୋଇଲେ ମୋ ନିଦ ସହଜରେ ଭାଙ୍ଗେ ନାହିଁ । ନ'ଦଶ ଘଣ୍ଟା ବା ତଦୂର୍ଦ୍ଧ୍ୱ ସମୟ ଏକାଦିକ୍ରମେ ଏକକଡ଼ରେ ଅଚେତନ ହୋଇ ଶୋଇରହିବାର ଯଶ ବା ଅପଯଶ ମୋର ବହୁଦିନରୁ ଅଛି । ସଞ୍ଜବେଳେ ଟୁର୍‌ରୁ କ୍ଲାନ୍ତ ହୋଇ ଫେରି ବେଳାବେଳି ଖାଇସାରି ବିଛଣା ଧରିଥିଲି । କାଲି ସକାଳ ଆଠଟା ପୂର୍ବରୁ କେହି ମୋତେ ଉଠାଇବେ ନାହିଁ ବୋଲି ସମସ୍ତିଙ୍କୁ ସତର୍କ କରିଦେଇଥିଲି । ଅଥଚ କଣ୍ଟା ନିଦଟା ଏମିତି ଚାଉଁକିନା ଭାଙ୍ଗିଗଲା । ଆଉ କେମିତି ଗୋଟାଏ ଭରି ଅସ୍ୱସ୍ତି ଅସ୍ୱସ୍ତି ଭାବ ।

କାନରେ ବାଜିଲା ଗୋଟାଏ ଛୋଟ ପିଲାର କାନ୍ଦଣା । କୁନ୍ଥେଇ କୁନ୍ଥେଇ କାନ୍ଦୁଛି କେଉଁଠି ଗୋଟାଏ ପିଲା । ଠିକ୍ କାନ୍ଦିପାରୁନାହିଁ । କଫ ଧଡ଼ ଧଡ଼ କେମିତି ଗୋଟାଏ ଅଛିଣ୍ଡା କାଶ ତୁହାଇ ତୁହାଇ ଉଠି ପିଲାଟିର ନିଶ୍ୱାସ ରୁନ୍ଧିଦେଉଛି । ଭରି କଷ୍ଟ ପାଉଛି ପିଲାଟା । ରହି ରହି ଘରର କେଉଁ କୋଣରୁ ସେ ଶବ୍ଦ ନିର୍ଗତ ହୋଇ ଚାରିଆଡ଼କୁ ବ୍ୟାପିଯାଉଛି । ବଡ ଯନ୍ତ୍ରଣାମୟ ସେ ଶବ୍ଦ । ସାରା ଘରର ଭିତ୍ତିପତ୍ତନ ପର୍ଯ୍ୟନ୍ତ ଥରିଉଠୁଛି ଯେପରି ସେ ଶବ୍ଦର ଆଘାତରେ । ନିଦମଳମଳ ଚେତନା ଉପରେ ତା'ର ପ୍ରକ୍ରିୟା ଅତି ମର୍ମନ୍ତୁଦ । ଅସ୍ଥିର ହୋଇପଡ଼ିଲି ।

ଚାରିଆଡ଼କୁ ଚାହିଁଲି । ପାଖରେ ଗୃହିଣୀଙ୍କର ଶଯ୍ୟା ଶୂନ୍ୟ । ପଙ୍ଖା ବନ୍ ବନ୍ କରି ଘୂରୁଛି । ମନେପଡ଼ିଲା, ମୋ ଛୋଟ ଝିଅର ବ୍ରୋଙ୍କାଇଟିସ୍ । କିନ୍ତୁ ସେ ତ ଭଲ ହୋଇଗଲାଣି । ଟୁରରୁ ଫେରୁ ଫେରୁ ପ୍ରଥମେ ବୁଝି-ନେଇଥିଲି ସେଇ କଥା । ଛାତି ପରୀକ୍ଷା କରି ଡାକ୍ତର ନିଶ୍ଚିନ୍ତ ହୋଇ କହି-ଯାଇଛନ୍ତି ଆଉ ତିନି ଚାରି ଦିନ ଟିକେ ସାବଧାନ ରହିବାକୁ । ପଙ୍ଖାତଳେ ନ ଶୋଇଲେ ଭଲ । ମା ଓ ଝିଅ ତେଣୁ ପାଖଘରେ ଶୋଇଛନ୍ତି ପଙ୍ଖା ନ ଘୁରାଇ ।

ଅସହାୟ ଶିଶୁଟିର ଶ୍ୱାସରୁଦ୍ଧ ବିକଳ କ୍ରନ୍ଦନ ମୋତେ ଅଭିଭୂତ କରିପକାଇଲା । ହଠାତ୍ ମନେ ହେଲା ଏ ତ ମୋ ଝିଅର କାନ୍ଦଣା ସ୍ୱର । ମନେ ହେବା ସଙ୍ଗେ ସଙ୍ଗେ ସେ ଶବ୍ଦଟା ଯେପରି ଆଉରି ସ୍ପଷ୍ଟ ହୋଇ ବାଜିଉଠିଲା ଓ ପାଖଘରୁ ତା' ଆସୁଛି ବୋଲି ମୁଁ କ୍ରମେ ନିଃସନ୍ଦେହ ହୋଇପଡ଼ିଲି । ଆତଙ୍କରେ ଥରିଉଠିଲି । ଏକ ଅସହ୍ୟ ଉତ୍ତେଜନାରେ ମୁଁ ଉଠିବସିଲି ।

ମୋର ତିନିବର୍ଷର କନ୍ୟା ଏ ମୃତ୍ୟୁଯନ୍ତ୍ରଣା ଭୋଗ କରି ଚାଲିଛି । କିନ୍ତୁ ତା' ମା'ର ନିଦ୍ରାଭଙ୍ଗର ତ କିଛି ସୂଚନା ଦେଖାଯାଉନାହିଁ । ଏହା ଭାବିବା ମାତ୍ରେ ମୋର ସମସ୍ତ ବିଦ୍ୱେଷ ଯାଇ ତା' ମା'ଙ୍କ ଉପରେ ପଡ଼ିଲା । ଦଶମାସ ଗର୍ଭରେ ଧାରଣ କରି ଜନ୍ମଦାନ କରିଛି ଯେଉଁ ଜନନୀ ସେ ତ

ବେଶ୍ ଶାନ୍ତିରେ ନିର୍ବିଘ୍ନରେ ଶୋଇରହିଛି । ଉଁ କି ଚୁଁ ଶବ୍ଦ ନାହିଁ । ଅଥଚ ପିଲଟା କାନ୍ଦି କାନ୍ଦି କାଶି କାଶି ହୁଏତ ଶ୍ୱାସରୁଦ୍ଧ ହୋଇ ମରିଯିବ । ଓଃ, କି ଭୟଙ୍କର ଏଇ ନାରୀ ! ଏହା ଦ୍ୱାରା ସବୁ କିଛି ସମ୍ଭବ । ନିଜର ଗର୍ଭଜାତ ଶିଶୁର ଗଳା ଟିପି ମାରିଦେଇପାରେ ସେ–କୋଲ୍ଡ୍ ବ୍ଲଡେଡ୍ ମର୍ଡର ! ଅଥଚ ଏହି ନାରୀ ମୋର ଅର୍ଦ୍ଧାଙ୍ଗିନୀ, ଶଯ୍ୟାସଙ୍ଗିନୀ, ମୋର କନ୍ୟାଶିଶୁର ଜନନୀ ! ମଧ୍ୟରାତ୍ରିର ହଠାତ୍ ନିଦଭଙ୍ଗା ଚେତନା ଉପରେ ସହସ୍ର ବିଭୀଷିକା ନାଚିବୁଲିଲା । ଏକ ସମୟରେ ମନେ ହେଲା, ଯାଇ ତାଙ୍କୁ ଉଠାଇଦେବି କି ! ଛୁଆଟିକୁ କୋଳକୁ ନେଇ ତା'ର ଛାତି ଆଉଁସିଦେଇ ଥାପୁଡ଼ାଇ ଥାପୁଡ଼ାଇ ଶୁଆଇଦେବି ! କିନ୍ତୁ ନା, ମୁଁ କିଛି କରିବି ନାହିଁ । ପିଲଟା କାନ୍ଦି କାନ୍ଦି ମରିଯାଉ । ତା' ମା ତା' ପାଖରେ ଗଡ଼ପରି ପଡ଼ିରହି ଘୁଙ୍ଗୁଡ଼ି ମାରୁ । ମୋର ସଂସାର ଧ୍ୱଂସ ହୋଇଯାଉ । ସାରା ସୃଷ୍ଟି ଧ୍ୱଂସ ହୋଇଯାଉ ।

ମୋର ସମସ୍ତ ସ୍ନାୟୁ ଭୟାନକ ଭାବରେ ଉତ୍ତେଜିତ ହୋଇଉଠିଲା । ତା'ପରେ କେମିତି ଗୋଟାଏ କ୍ଳାନ୍ତି ଓ ଅବଶ ଭାବ ମୋତେ କ୍ରମେ ଆଚ୍ଛନ୍ନ କରିପକାଇଲା ।

ମୁଁ ତା'ରି ମଧ୍ୟରେ କେତେବେଳେ ଶୋଇପଡ଼ିଛି ।

ତା' ଆରଦିନ ସକାଳ । ଗୃହିଣୀଙ୍କ ଡାକରେ ନିଦ ଭାଙ୍ଗିଗଲା । ଆଠଟା କେତେବେଳୁ ବାଜିଗଲାଣି । ଗୃହିଣୀ ମୋ ଶଯ୍ୟାର ଅନତିଦୂରରେ ଠିଆହୋଇ ମୃଦୁ ମୃଦୁ ହସୁଛନ୍ତି । ସଦ୍ୟସ୍ନାତା, କପାଳ ମଝିରେ ଛୋଟ ସିନ୍ଦୂର ଟୋପାଟି ଭାରି ସୁନ୍ଦର ଦିଶୁଛି । ବାଳ ଫିଟି କାନ୍ଧ ଉପରେ, ପିଠି ଉପରେ ବିଛାଡ଼ି ହୋଇ ପଡ଼ିଛି । ମେରୁନ୍ ରଙ୍ଗର ଶାଢ଼ୀଟାରେ ତାଙ୍କର ହେମକାନ୍ତିତନୁ ଅପରୂପ ଦିଶୁଛି । ଅଜାଣତରେ ଅବାଧ୍ୟ ହାତଟା ପ୍ରସରିଯାଇଥିଲା ବୋଧହୁଏ । ବିଦ୍ୟୁତ୍-ସ୍ପୃଷ୍ଟପରି ହଠାତ୍ ଚମକି-ଉଠିଲି । ଗତ ରାତିର ଘଟଣା ଗୁଡ଼ିକ ମନେପଡ଼ିଗଲା । ମୁହଁ ବୁଲାଇନେଇ ଚଟ୍‌କରି ଖଟର ଆରପଟେ ଓହ୍ଲାଇଯାଇ ବାଥରୁମ୍ ଭିତରକୁ ପଶିଗଲି ।

କିଛି ସମୟ ପରେ ସବୁଦିନ ପରି ଦାଣ୍ଡଘରେ ଯାଇ ବସିଲି । ସବୁଦିନ ପରି ଗୃହିଣୀ ଆସିଲେ । ଦକ୍ଷିଣ ଭୁଜରେ ଧୂମାୟିତ ଟ୍ରୀ'କପ୍ । ବାମଭୁଜରେ ଖବର କାଗଜ । ପାଖ ଟିପୟ ଉପରେ ଟ୍ରୀ'କପ୍ ରଖିଦେଇ ଖବରକାଗଜଟାକୁ ମୋ କୋଳ ଉପରକୁ ଫୋପାଡ଼ିଦେଇ ପାଖ ଚେୟାରରେ ବସିଲେ । ଯେତେ ଚେଷ୍ଟା କଲେ ବି ମୁଁ ସ୍ୱାଭବିକ ହୋଇପାରୁନାହିଁ । ଟ୍ରୀ'କପ୍‌ରୁ ଢୋକେ ପିଇ ଖବରକାଗଜ ଖୋଲି ମନୋନିବେଶ କରିବାକୁ ଚେଷ୍ଟା କଲି । ନୀରବରେ କେତେ ସମୟ ଗଡ଼ିଗଲା । ମୁହଁର ପେଶୀଗୁଡ଼ାକ ଅସ୍ୱାଭବିକ ଭବରେ ଅପ୍ରସନ୍ନ ଓ କଠିନ ହୋଇପଡ଼ିଥିଲା ବୋଧହୁଏ ।

ଗୃହିଣୀ ମୋ ହାତରୁ କାଗଜ ଛଡ଼ାଇନେଇ ମୋର କାନ୍ଧକୁ ଦୁଇ ହାତରେ ଦୋହଲାଇଦେଇ କହିଉଠିଲେ, "ସାତ ସକାଳୁ ତୁମର ହୋଇଛି କଣ ଶୁଣେ ! ଚ୍ରରିଦିନ ବାହାରେ ରହି ଘରକୁ ଫେରୁଛ; କଥା ନାହିଁ, ବାର୍ତ୍ତା ନାହିଁ ! କି ଅପରାଧ କରିପକାଇଲି ଏହା ଭିତରେ ? ଡାକ୍ତର କଥା ମାନି ଛୁଆଟାକୁ ନେଇ ପାଖଘରେ ଶୋଇଥିଲି । ସେଇଥିପାଇଁ ମହାଶୟଙ୍କର ରାଗ ହୋଇଗଲା ନା କଣ ?"

ରାତିର ସେଇ ବିଭୀଷିକା ଆଖିଆଗରେ ଭସିଉଠିଲା । ସେଇ ନାରୀ ! କାନ୍ଧରୁ ତାଙ୍କ ହାତ ଧୀରେ ଅଲଗେଇଦେଇ ମୁଁ ଝାଡ଼ିଝୁଡ଼ି ହୋଇ ବସିଲି ।

ତଳକୁ ମୁହଁ ପୋତି ମନକୁମନ କହିହେଲା ପରି କହିଲି, "ଅପରାଧ ! ଅପରାଧ ତୁମେ କାହିଁକି କରିବ ? ସବୁ ଅପରାଧ ମୋର । କାରଣ, ଛୁଆଟାର ଜନ୍ମଦାତା ମୁଁ ।" ସ୍ୱରଟା କ୍ରମେ ଚଢିଗଲା, "ତୁମେ ପରା ମା, ଜନନୀ, ଗର୍ଭଧାରିଣୀ ! ଛୁଆଟା ରାତିସାରା କାନ୍ଦି କାନ୍ଦି ନେଳିଆ ପଡ଼ିଗଲା, ମରିଯାଇଥାନ୍ତା ଶ୍ୱାସରୁଦ୍ଧ ହୋଇ । ଅଥଚ ତା'ରି ପାଖରେ ତୁମେ ନିଶ୍ଚିନ୍ତରେ ଶୋଇ ଶୋଇ ରାତି ପୁହାଇଦେଇ ଭଲ ମଣିଷ ସାଜି ବାହାରିଛ ମୋ ସଙ୍ଗେ ଖୁସିଗପ କରିବାକୁ ! ତୁମେ ବାସ୍ତବିକ କି ଉପାଦାନରେ ଗଢ଼ା ? ତୁମେ କଣ ? ତୁମେ.... ମୋର ବାକ୍‌ରୁଦ୍ଧ ହେଲା ।

କିର୍ କିର୍ ହୋଇ ସେ ହସିଉଠିଲେ, "ହଉ, ହଉ, ମୁଁ ପିଶାଚିନୀ, ଚଣ୍ଡାଳୁଣୀ, ଯା' କହିବ ମୁଁ ତା' । କିନ୍ତୁ ଚା'ଟା ଥଣ୍ଡା ହୋଇଗଲାଣି । ଆଉ କପେ କରିଆଣେ ।" କହି ସେ ଚା କପ୍‌ଟା ହାତରେ ନେଇ ଅନ୍ତର୍ହିତ ହେଲେ । ମୁଁ ମୂକ ହୋଇ ବସିରହିଲି । ତଳୁ ଖବରକାଗଜ ଗୋଟାଇଆଣି ଆଖି ଆଗରେ ଖୋଲିଧରି ଆକାଶ ପାତାଳ ଭବିବାକୁ ଲାଗିଲି ।

କିଛି ସମୟ ପରେ ଗୃହିଣୀ ଫେରିଆସି ଚା' କପ୍ ଯଥାସ୍ଥାନରେ ରଖି ମୋ ମୁହଁକୁ ତାଙ୍କ ହାତରେ ଧରି ଝରକା ଆଡ଼କୁ ଈଷତ୍ ଘୁରାଇଦେଲେ । ଅନୁଚ୍ଚରେ କହିଲେ, "କଣ ଦେଖୁଛ ?"

ଦେଖିଲି, ବାହାରେ ଖରା ଚିକ୍ ଚିକ୍ ଲନ୍ ଉପରେ ପେରେମ୍ବୁଲେଟର ଠେଲି ଠେଲି ଆୟା ଚାଲିଛି ଓ ପେରେମ୍ବୁଲେଟର ଭିତରୁ ଗୋଲାପି ରଙ୍ଗର ସ୍ୱେଟର, ସେଇ ରଙ୍ଗର ଟୋପି ପିନ୍ଧି ମୋର ତିନି ବର୍ଷର ଗୋରା ତକ୍‌ତକ୍ ପୁଚୁକାଗାଲିଆ ଝିଅ ତା'ର ଛୋଟ ଛୋଟ ହାତ ମୋ ଆଡ଼କୁ ଟେକି ପାକୁଆ ପାଟିରେ ହସୁଛି ।

ଗୃହିଣୀ ମୋ ପାଖକୁ ଲାଗିଆସି କହିଲେ, "ଦେଖିଲ ? ତୁମେ ଯେଉଁ ଛୁଆର କାନ୍ଦଣା ଶୁଣି ମୁଁ କଣ ବୋଲି ଭଷା ପାଉ ନ ଥିଲ, ସେ ଆମ ମାଳୀର ଛୁଆଟା—ମାସେ ହେଲା ବଡ଼ ଭୋଗୁଛି, ହୁପିଙ୍ଗ୍ କଫ୍, ବିଚରା..

ମୁଣ୍ଡରୁ ଗୋଡ଼ ପର୍ଯ୍ୟନ୍ତ ଗୋଟେ ଝାଳ ବୋହିଗଲା । ମନେ ମନେ ଭଗବାନଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣିପାତ ହେଲି । ମୋ ଉପରେ ଭଗବାନଙ୍କର କି ଦୟା ! ଓଃ, କି ଯନ୍ତ୍ରଣା ନ ଭୋଗିଛି ମୁଁ ସାରା ରାତିଟା । ମନଟା ଆଶ୍ଚର୍ଯ୍ୟ ରକମର ହାଲୁକା ଓ ଉତ୍‌ଫୁଲ୍ଲ ହୋଇଉଠିଲା ।

ଠୋ ଠୋ କରି କିଏ କେଉଁଠି ହସିଉଠିଲା । ଚମକିପଡ଼ି ବାହାରକୁ ଚାହିଁଲି । ଛୋଟ ପିଲାଟା ହସୁଛି—ବେଦମ୍ ହସୁଛି । ମୋ ଆଡ଼କୁ ଚାହିଁ ଛୁଆଟା ଏତେ ହସୁଛି କାହିଁକି ?

ଆମର ନାଲିରଙ୍ଗର ପୁଷି ବିରାଡ଼ିଟା ଛୁଆର ଦୁଧଗିନାରେ ମୁହଁ ବୁଡ଼ାଇ ଚୁକ୍ ଚୁକ୍ କରି ଚାଟୁଛି—ଆଖି ବୁଜି ।

ଏକ ଅପରିସୀମ ଲଜ୍ଜାରେ ମୁଁ ମୁହଁ ଢାଙ୍କିପକାଇଲି ।

# ହେଡ୍‌ମାଷ୍ଟର

ଏକେ ଶୀତ ଦିନ—ସାଙ୍ଗକୁ ପୁଣି ରବିବାର । କାଲି ରାତିରେ କ୍ଲବରୁ ଫେରୁ ଫେରୁ ତାରିଖ ବଦଳିଯାଇଥିଲା । ଶନିବାର ସନ୍ଧ୍ୟାଟା କାଲି ଖୁବ୍ ଜମିଉଠିଥିଲା । କେତେକ ସମଝଦାର ବନ୍ଧୁ ଜୁଟିଯାଇଥିଲେ । ଫଳରେ ଗ୍ଲାସ ଝୁଙ୍କରେ ପାନୀୟର ମାତ୍ରା ସୀମା ଅତିକ୍ରମ କରିଯାଇଥିବା ବିଚିତ୍ର ନୁହେଁ । କିନ୍ତୁ ସେଥିରେ କିଛି ଯାଏଆସେ ନାହିଁ; ମାତ୍ରା ଯେତେ ଅଧିକ ହେଲେ ବି ପାଦ ଟଳିବ ନାହିଁ । ଡ୍ରାଇଭିଂ ହୁଇଲ୍ ଉପରେ ହାତ ଥରିବ ନାହିଁ । ପରଦିନ ତ ରବିବାର; ଦିନ ଏଗାରଟା ବେଳେ ବିଛଣା ଛାଡ଼ିଲେ ବି କ୍ଷତି ନାହିଁ ।

ସକାଳ ସଢ଼େ ସାତ ବାଜିଯାଇଥିଲେ ବି ମୁଁ ଯେତେବେଳେ ନିଘୋଡ଼ ନିଦ୍ରାରେ ଅଚେତନ, କରୁଣାଙ୍କର ଅର୍ଥାତ୍ ମୋ ସ୍ତ୍ରୀଙ୍କର ଅକରୁଣ ତୁହିନଶୀତଳ କରସ୍ପର୍ଶରେ ମୁଁ ଚେଇଁଉଠିଲି । ଆଜି ତ ରବିବାର । କୌଣସି ଏନ୍‌ଗେଜ-

ମେଣ୍ଟ ନ ଥିବାର କଥା । କବାଟ ଝରକା ବନ୍ଦ କରିଦେଇ ପର୍ଦ୍ଦା ଟାଣିଦେଇ ଆମ ବେଡ୍‌ରୁମ୍ ଏରିଆକୁ ନୀରବ ନିଶ୍ଚଳ କରିଦେଇ କରୁଣାଙ୍କର ତ ତଳକୁ ଚାଲିଯିବାର କଥା । ପିଲାପିଲି ବି ଉପରକୁ ଏ ସମୟରେ ଆସିବାର ବାରଣ ଅଛି । ରବିବାର ସକାଳପାଇଁ ଏଭଳି ଏକ ବ୍ୟବସ୍ଥା ବହୁଦିନରୁ ଚାଲିଆସୁଛି । ତା'ହେଲେ ଆଜି ଏ ବ୍ୟତିକ୍ରମ କାହିଁକି ? ରୋଷକଷାୟିତ ଦୃଷ୍ଟି କରୁଣାଙ୍କ ଆଡ଼େ ଥରେ ନିକ୍ଷେପ କରି କଡ଼ ଲେଉଟାଇ ପୁଣି ଶୋଇବାର ଉଦ୍ୟମ କରୁଥିଲି, କରୁଣା ବଡ ବ୍ୟସ୍ତ ହୋଇ କହିଉଠିଲେ—"ଏ, ନିଦ ଭାଙ୍ଗିଦେଇ ଉଠ, ତଳକୁ ଯାଅ । କିଏ ଜଣେ ଭଦ୍ରଲୋକ ଦେଢ଼ଘଣ୍ଟା ହେଲା ଆସି ବସିଛନ୍ତି ତୁମକୁ ଦେଖା କରିବେ ବୋଲି....!"

ଏଥର ଅତିଶୟ ବିରକ୍ତ ହୋଇଉଠିଲି, "ଭଦ୍ରଲୋକ ଆସିଛନ୍ତି ! କହିଦେଲନି, ଆଜି ରବିବାର, ଦେଖା ହେବ ନାହିଁ ।"

କରୁଣା ଓଠ ଉପରେ ଆଙ୍ଗୁଳି ରଖି କହିଉଠିଲେ—"ଚୁପ୍ ଚୁପ, ଏଡ଼େ ପାଟିଟାଏ କର ନାହିଁ । ମୁଁ କ'ଣ ସେ ଚେଷ୍ଟା କରିନାହିଁ ! କିନ୍ତୁ ଭଦ୍ରଲୋକ ଉଠିବାର ନାମ ଧରୁନାହାନ୍ତି । କହୁଛନ୍ତି, 'ହଉ, ହଉ, ସେ ଉଠୁ, ମୁଁ ବସିଛି ।' କି ଚମତ୍କାର କଣ୍ଠ, ଲମ୍ବା ଧଳା ଦାଢ଼ି, ଆଖିରେ ସୁନା ଚଷମା, ବେଶ୍ ସମ୍ଭ୍ରାନ୍ତ ବୃଦ୍ଧ ଭଦ୍ରଲୋକ । ତୁମ ସହିତ ଖୁବ୍ ଘନିଷ୍ଠତା ଥିଲା ପରି ମନେହେଉଛି । ଛୁଆଙ୍କୁ ଡକାଇ ପଠାଇଲେ । ଟୁନ୍ନୁ, ରିନାଙ୍କୁ ପଠାଇଦେଲି । ଛୁଆ ଦି'ଟାଙ୍କ ସହିତ ତାଙ୍କର ସେ କି ଗପ, କି ହୋ ହୋ ହସ ! ଚା' ପଠାଇଲି, ମନା କରିଦେଲେ । ସିଗ୍ରେଟ୍, ପାନ ଫେରିଆସିଲା । ମୋତେ ଶୁଣାଇ କହିଲେ, 'ମା, ମୋର ସେସବୁ କିଛି ଅଭ୍ୟାସ ନାହିଁ । ଗୋଲକନାଥକୁ ଟିକେ ଦେଖିବାକୁ ଆସିଥିଲି, ମୋ ପାଇଁ ବ୍ୟସ୍ତ ହେବ ନାହିଁ ।"

ତଡ଼ିତ୍‌ସ୍ପୃଷ୍ଟ ପରି ମୁଁ ଉଠିବସିଲି । ଏ ତ ଆମ ହେଡ୍‌ମାଷ୍ଟର—ମୋର ସ୍କୁଲ ଜୀବନର ହେଡ୍‌ମାଷ୍ଟର । ଚେୟାର ଉପରୁ ଡ୍ରେସିଂ ଗାଉନ୍‌ଟାକୁ ଟାଣିଆଣି ଚଟିଯୋଡ଼ାକ ଗୋଡ଼ରେ ଗଳାଇ ବାହାରିପଡୁଥିଲି ତଳକୁ ଯିବାପାଇଁ ।

ହେଡ୍‌ମାଷ୍ଟରଙ୍କ କଥା କରୁଣା ବହୁବାର ମୋ'ଠାରୁ ଶୁଣିଥିବେ । ସେ ଥକ୍‌କା ହୋଇ କ୍ଷଣକପାଇଁ ଛିଡ଼ା ହୋଇଗଲେ । କିନ୍ତୁ ସେ ବୁଦ୍ଧିମତୀ । ମୋତେ ସେ ବାଥ୍‌ରୁମ୍‌ଆଡ଼କୁ ଠେଲିଦେଇ ଚୁପ୍ ଚୁପ୍ କହିଲେ, "ତୁମେ ମୁହଁଟା ଧୋଇନିଅ । ମୁଣ୍ଡଟାକୁ କୁଣ୍ଡାଇପକାଅ—ସେଠି ଇଉଡିକଲୋନ୍ ସ୍ପ୍ରେ ଅଛି । ମୁଁ ଚଟ୍‌କରି କପେ ଗ୍ରୀ' ଆଣି ଦେଉଛି—ଖାଇ ଦି'ଟା ଲବଙ୍ଗ, ଗୁଜଗତି ଗ୍ରେବାଇ ତଳକୁ ଯାଇ ତୁମ ହେଡମାଷ୍ଟରଙ୍କୁ ଦେଖା କର ।"

ବୁଝିପାରିଲି କରୁଣାଙ୍କ ଉପଦେଶର ମର୍ମ । ଶନିବାର ମଧ୍ୟରାତ୍ରିର ହେଙ୍ଗ୍ ଓଭର ଦୃଷ୍ଟେ ତାଙ୍କର ଏ ପ୍ରତିଷେଧକ ବ୍ୟବସ୍ଥା । ମୋର ଏଇ ବିମୂଢ଼ ଅବସ୍ଥାରେ ବି ହସିପକାଇଲି ।

ତଳ ତାଲରୁ ଭସିଆସୁଛି ପିଲଙ୍କ ସଙ୍ଗେ ହେଡ୍‌ମାଷ୍ଟ୍ରଙ୍କ ଦରାଜ ସାବ୍‌ଲୀଳ କଣ୍ଠ, ପ୍ରାଣଖୋଲ ହୋ ହୋ ହସ । ତିରିଶ ଗ୍ଳିଶ ବର୍ଷର ବ୍ୟବଧାନ କ୍ଷଣକପାଇଁ ଅପସରିଗଲା । ମୁଁ ସେତେବେଳେ କ୍ଳାସ୍ ସେଭେନ କି ଏଇଟ୍‌ରେ ପଢୁଥାଏ । ମୋଟା ସୋଟା ନ'ଦଶ ବର୍ଷର ବାଳକ । ଲୁଗାକାନି କମରରେ କଷା, ଖାଲି ଦେହ, ମୁଣ୍ଡରେ ଝଙ୍କାଏ ବାଳ । ମୋ ବଡ଼ ଭଉକୁ ଜର ହୋଇ ଛାଡ଼ିଯାଇଥାଏ—ପାଟି ଅରୁଚି । ମୋତେ ଚୁପ୍ କରି କହିଲା, "ଯା'ତ, ଜମିଦାର ଘର ବରକୋଳି ଗଛରୁ ଦରପାଚଲା କୋଳି ମୋ ପାଇଁ ଆଣିବୁ । ଭରି ଇଚ୍ଛା ହେଉଛି ଖାଇବାକୁ । ଏୟ, ବୋଉକୁ କହିବୁ ନାହିଁଟି !" ସଙ୍ଗେ ସଙ୍ଗେ ଛୁଟିଲି । ଶୀତଦିନିଆ ସକାଳ । ଜମିଦାର ଘର ବାଡ଼ି ଭିତରକୁ ପଶିଲି । ଅନେକ ଘୁରଘୁରି କରି ଠାବ କଲି ବରକୋଳି ଗଛର ଅଗ ଡାଳରେ ଗୋଟାଏ ନାଲ୍ ଟକ୍ ଟକ୍ କୋଳି । ସେଇଟା ନେବି ନନା ପାଇଁ । ଟେକା ପକାଇଲି, ଫୋପଡ଼ ମାରିଲି । କିଛି ହେଲା ନାହିଁ । କଞ୍ଚା କୋଳି କେତେକ ଝଡ଼ି ପଡ଼ିଲା; କିନ୍ତୁ ସେ ପାଚିଲା କୋଳିଟା ସେମିତି ଅଗଡାଳରେ ପତ୍ରସନ୍ଧିରେ ଜକ୍ ଜକ୍ କରୁଥାଏ । ଝାଳ ବୋହିଗଲା । ଛାଇରେ ବସି ଝାଳ ମାରି ପୁଣି ଉଠି ଟେକା ଫୋପଡ଼ ମାରିଲି । ଅନେକ ଚେଷ୍ଟା ପରେ ଗୋଟାଏ ଫୋପଡ଼ ଯାଇ ଠିକ୍ ଜାଗାରେ

ବାଜିଗଲା । ସେଇ କୋଳିଟା ତଳେ ଆସି ପଡ଼ିଲାମାତ୍ରକେ ଦୌଡ଼ିଯାଇ ତାକୁ ଗୋଟାଇଆଣି ଲୁଗାକାନିରେ ପୋଛି ଘରକୁ ଯିବାକୁ ଗୋଡ଼ ବଢ଼ାଉଛି, ବଙ୍ଗଳା ଭିତରୁ ବାହାରିଆସିଲେ ଏକ ଦାଢିଆ ବୁଢ଼ା ଭଦ୍ରଲୋକ । ଆଖିରେ ସୁନା ଚଷମା, ଉଜ୍ୱଳ ଯୋଡ଼ିଏ ଆଖି, ଆଉ ଦାଢି ଭିତରୁ ଧଳା ଧଳା ଦୁଇପାଟି ଦାନ୍ତ । ମୁଁ ଡରରେ ପ୍ରାୟ ଥରୁଥିଲି । ମୁଁ ଯେତେ ଟେକା ଫୋପାଡ଼ିଲିଣି ସେଥିରୁ ଗୋଟେ ଯୋଡ଼େ ଯାଇ ଘର ଭିତରେ ପଡ଼ିଗଲା କି ! ଜମିଦାର ଘର ଗଛରୁ କୋଳି ଚୋରି କରୁଛି, ମୋତେ ଜେଲ୍ ଦେବେ କି ! ହେ ଭଗବାନ, ମୋତେ ଏଇ ଥରଟା ଛାଡ଼ିଦିଅ—ଆଉ କେବେ ଏମିତି କରିବି ନାହିଁ । କିନ୍ତୁ ଏ କ'ଣ ! ସେ ବୁଢ଼ା ଭଦ୍ରଲୋକ ହସି ହସି ମୋ ପାଖକୁ ଆସି ପିଠି ଥାପୁଡ଼େଇ ଦେଇ କହିଲେ, "ୱେଲ୍ ଡନ୍, ମାଇଁ ବୟ !"

ପରେ ଜାଣିଲି, ସେଇ ଆମ ସ୍କୁଲର ନୂଆ ହେଡ୍‌ମାଷ୍ଟ୍ର । ମଧୁସୂଦନ ଗ୍ରନ୍ଥାବଳୀରୁ ପଦ୍ୟ ମୁଖସ୍ଥ କଲାବେଳେ ମୂଳ ପୃଷ୍ଠାରେ କବିଙ୍କ ଛବିଟି ମୋତେ ଭାରି ଭଲ ଲାଗୁଥାଏ । ସେଇ ଛବି ସଙ୍ଗେ ଆମ ହେଡ୍‌ମାଷ୍ଟ୍ରଙ୍କ ମୁହଁର କି ଅଦ୍ଭୁତ ମେଳ ! ସେଇ ଚଉଡ଼ା କପାଳ, ଧଳା-କଳା ଦାଢି, ସୁନା ଚଷମା ଓ ଚଷମା ତଳେ ଉଜ୍ୱଳ ସୁନ୍ଦର ଆଖିଯୋଡ଼ିକ । ମୋ ମନ ଭିତରେ ମଧୁ ରାଓ ଓ ହେଡ୍‌ମାଷ୍ଟର ମିଶି ଏକ ହୋଇଯାନ୍ତି । ସେଇ ପିଲାଟିଦିନରୁ ସେ ଦୁଇ ମହାପୁରୁଷଙ୍କ ଗଭୀର ଛାପ ମୋ ମନ ଉପରେ ଆଙ୍କିହୋଇଯାଏ ।

କେଇଟା ଦିନ ଭିତରେ ସ୍କୁଲର ଆବହାୱା ପୂରାପୂରି ବଦଳିଗଲା । ହେଡ୍‌ମାଷ୍ଟ୍ରଙ୍କ ନାମରେ ସମସ୍ତେ ଥରହର । ଆମମାନଙ୍କୁ ସେ ଯେତିକି ସ୍ନେହ କରନ୍ତି, ସେତିକି କଡ଼ା । ସାମାନ୍ୟ ଦୋଷତ୍ରୁଟି ତାଙ୍କ ଦୃଷ୍ଟି ଏଡ଼ାଇବାର ଉପାୟ ନାହିଁ । ମନେପଡୁଛି ଥରେ ଡେସ୍କ ଉପରକୁ ଝୁଙ୍କିପଡ଼ି ହାତ ଉପରେ ମୁଣ୍ଡ ରଖି ଟିକିଏ ଢୁଳାଇ ପଡ଼ିଥିଲି ନା କ'ଣ ହେଡ୍‌ମାଷ୍ଟ୍ରେ ଗର୍ଜି ଉଠିଲେ, 'ଏୟ, ୟୁ, ଷ୍ଟାଣ୍ଡ ଅପ୍ ଅନ୍ ଦି ବେଞ୍ଚ !' କେବଳ ସେଇ ପିରିଅଡଟା ନୁହେଁ; ଲଗାଲଗି ଦୁଇ ପିରିଅଡ୍ ବେଞ୍ଚ ଉପରେ ଛିଡ଼ା ହୋଇ ରହିଲି । ଏ ତ

ସାମାନ୍ୟ ଦଣ୍ଡ । କ୍ଲାସକୁ ଟାସ୍କ ନ କରି ଆସିଲେ ବା କୌଣସି ଫାଜିଲାମି ବା ଦୁଷ୍ଟାମି ଆଖିରେ ପଡ଼ିଲେ ଖୋଲା ହାତ ପାପୁଲି ଉପରେ ଚାଲିବ ବେତ୍ରାଘାତ—ଏକ, ଦୁଇ, ତିନି—ସାରା କ୍ଲାସ ସ୍ତବ୍ଧ, ନିସ୍ପନ୍ଦ ।

କି ଚମତ୍କାର ପଢ଼ାନ୍ତି ହେଡ୍‌ମାଷ୍ଟ୍ରେ । ଇଂରେଜୀ କବିତା ହେଉ ବା ଓଡ଼ିଆ କବିତା ହେଉ ସେ ଯେତେବେଳେ ଆବୃତ୍ତି କରି ପଢ଼ନ୍ତି (ବହି କେବେ କେମିତି ଦେଖନ୍ତି ସିନା, ସବୁ ମୁହଁ ସ୍ତୁ), ଶବ୍ଦଗୁଡ଼ିକର ଅର୍ଥ ବୁଝୁଁ ବା ନ ବୁଝୁଁ ସେ କବିତାର ମର୍ମ ଯେପରି ଆମ ପ୍ରାଣକୁ ସ୍ପର୍ଶ କରୁଥିଲା । ମନେ ଅଛି, ଥରେ ହେଡ୍‌ମାଷ୍ଟ୍ରେ 'ମାଇଁ ମଦର' ବୋଲି ଗୋଟିଏ ଛୋଟ ଇଂରେଜୀ କବିତା ମାନେ ନ ବୁଝାଇ ଧୀରେ ଧୀରେ ବୋଲିଯାଉଥାନ୍ତି । ହଠାତ୍ କ'ଣ ଗୋଟାଏ ଶବ୍ଦ ଶୁଣି ପଛକୁ ଅନାଇ ଦେଖେଁ, କୈଳାସ କଇଁ କଇଁ ହୋଇ କାନ୍ଦୁଛି । କୈଳାସର ମା' କିଛିଦିନ ହେଲା ମରିଯାଇଥାନ୍ତି ।

ହେଡ୍‌ମାଷ୍ଟରଙ୍କର ସବୁଠୁ ପ୍ରିୟ କବିତା ଆବୃତ୍ତି । ଉଚ୍ଚାରଣ ଶୁଦ୍ଧ ନ ହେଲେ ବାରମ୍ବାର, ଦଶ କୋଡ଼ିଏ ଥର ପ୍ରତ୍ୟେକ ଶବ୍ଦକୁ ସ୍ପଷ୍ଟରୂପେ ଉଚ୍ଚାରଣ କରି ବୋଲିବାକୁ ହେବ । ଆମ ପ୍ରାର୍ଥନା କ୍ଲାସରେ ହେଡ୍‌ମାଷ୍ଟ୍ରେ ଯେତେବେଳେ ତାଙ୍କ ଗୁରୁଗମ୍ଭୀର କଣ୍ଠରେ ଆରମ୍ଭ କରନ୍ତି 'ଅଖିଳ ବ୍ରହ୍ମାଣ୍ଡପତି ମୋ ଜୀବନସ୍ୱାମୀ' ଓ ବୋଲିଯାନ୍ତି 'ସତ୍ୟପଥେ ଧର୍ମପଥେ ଘେନିଯାଅ ମୋତେ, ଭସାଅ ପରାଣ ମୋର ତବ ପ୍ରେମସ୍ରୋତେ' ମୋ ରୁମ ଟାଙ୍କୁରି ଉଠେ । ସ୍କୁଲ, କଲେଜ ଛାଡ଼ିବାର ବହୁବର୍ଷ ପର୍ଯ୍ୟନ୍ତ ଏଇ ଦୁଇଟି ପଂକ୍ତି ଆବୃତ୍ତି କରି ମୁଁ ଗଭୀର ସାନ୍ତ୍ୱନା ପାଉଥିଲି ।

ଯେଉଁ ତିନି ଚାରି ବର୍ଷ ମୁଁ ସ୍କୁଲରେ ଥିଲି ହେଡ୍‌ମାଷ୍ଟରଙ୍କର ସ୍ନେହ, ବ୍ୟକ୍ତିତ୍ୱ, ଶିକ୍ଷା ଓ ଆଦର୍ଶର ପ୍ରଭାବ ମୋତେ ପୂର୍ଣ୍ଣଭାବରେ ଆଚ୍ଛନ୍ନ କରିପକାଇଥିଲା । ପଢ଼ାପଢ଼ିଠାରୁ ଆରମ୍ଭ କରି କ୍ଲାସ ବାହାରେ ଚାଲିଚଳଣ ସବୁ କ୍ଷେତ୍ରରେ ତାଙ୍କର ଅଦୃଶ୍ୟ ଅଙ୍ଗୁଳିନିର୍ଦ୍ଦେଶ ଅନୁଭବ କରୁଥିଲି । ସ୍କୁଲ ଛାଡ଼ି କଲେଜରେ ଭର୍ତ୍ତି ହେଲି । ତା' ପରେ ବିଦେଶରେ ଉଚ୍ଚଶିକ୍ଷା ପାଇ

ଫେରିଆସି ଗୋଟାଏ ବଡ଼ ଫାର୍ମରେ ଇଞ୍ଜିନିଅରଭବେ ମୋ ଚାକିରିଜୀବନର ଆରମ୍ଭ । ମଧ୍ୟେ ମଧ୍ୟେ ହେଡ୍‌ମାଷ୍ଟରଙ୍କଠାରୁ ଚିଠି ପାଏ—ଶୁଦ୍ଧ ଓଡ଼ିଆରେ କେତୋଟି ସୁନ୍ଦର ସୁନ୍ଦର କଥା-ଶୁଭେଚ୍ଛା-ଆଶୀର୍ବାଦ । ଉତ୍ତର ଲେଖେ ଇଂରାଜୀରେ (ଓଡ଼ିଆ ଲେଖିବାର ଅଭ୍ୟାସ କ୍ରମେ ଛାଡ଼ିଯାଇଥିବାରୁ) । ଡରି ଡରି ଲେଖେଁ ଡିକ୍‌ସନାରୀ ଦେଖି, ଯେମିତି ବନାନ ଭୁଲ ନ ରହେ । ବନାନ ବା ବ୍ୟାକରଣ ଭୁଲ ଦେଖିଲେ ହେଡ୍‌ମାଷ୍ଟ୍ରେ କିଭଳି ଅସହିଷ୍ଣୁ ହୋଇପଡ଼ନ୍ତି ସେ ଦୃଶ୍ୟ ମନରେ ପଡ଼ିଯାଏ ।

ତା'ପରେ ବହୁବର୍ଷ ଗଡ଼ିଯାଇଛି । ଚାକିରିର ସିଡ଼ିରେ ଧାପେ ଧାପେ ଉଠି ମୁଁ ପ୍ରାୟ ଶୀର୍ଷ ସ୍ଥାନ ଅଧିକାର କରିଛି । ଯଥେଷ୍ଟ ବିତ୍ତ ଓ ପ୍ରତିପତ୍ତି ଅର୍ଜନ କରିଛି ! ମୁଁ ଆଜି ଫେକଟ୍ରିର ବଡ଼ସାହେବ ।

ହେଡ୍‌ମାଷ୍ଟରଙ୍କ ସଙ୍ଗେ ଚିଠିପତ୍ରର ଆଦାନପ୍ରଦାନ ନ ଥିଲେ ବି ଖବର ରଖିଥିଲି—ସେ ଚାକିରିରୁ ଅବସର ନେଇ ପୁରୀରେ ରହୁଥିଲେ । ତାଙ୍କ ସ୍ତ୍ରୀଙ୍କର ମୃତ୍ୟୁ ହୋଇଯାଇଥିଲା । ଏକମାତ୍ର ପୁତ୍ର ଦୂରଦେଶରେ କେଉଁଠି ଚାକିରି କରୁଥିଲା । ସେ ଏକାକୀ ପୁରୀଧାମରେ ରହି ବାକୀ ଜୀବନଟା ଜଗନ୍ନାଥଙ୍କ ପଦତଳେ କଟାଇ ଦେଉଛନ୍ତି । ଏ ଖବର ପ୍ରାୟ ଆଠ ଦଶ ବର୍ଷ ତଳେ ପାଇଥିଲି । ତା'ପରେ ଆଜି ତାଙ୍କର ଆମ ଘରେ ଆବିର୍ଭାବ ।

ସେଇ ପୁରୁଣା ଅତୀତର ଅସ୍ପଷ୍ଟ କେତେଗୁଡ଼ିଏ ଛବି ମନଗହୀରର ଅନ୍ଧାରରେ ଭାସିଉଠିଲା । କରୁଣାଙ୍କ ଉପଦେଶଗୁଡ଼ିକ ଅକ୍ଷରେ ଅକ୍ଷରେ ପାଳନ କରି ତର ତର ହୋଇ ସିଡ଼ିରେ ତିନି ଚାରି ପାଉଛ ଓହ୍ଲାଇଯାଇ ଲେଣ୍ଡିଂଠାଣେ ଘୁରିଗଲାବେଳକୁ ହଠାତ୍ ଆଖିରେ ପଡ଼ିଗଲା ଡ୍ରଇଂରୁମ୍‌ର ଭାରୀ ପର୍ଦ୍ଦା ଫାଙ୍କରେ ଏକ ଅଦ୍ଭୁତ ଦୃଶ୍ୟ । ସେଇଠି 'ବେନିସ୍‌ଟାର' ଉପରେ ଝୁଙ୍କିପଡ଼ି ଠିଆହୋଇଗଲି । ସୋଫାରେ ବସିଛନ୍ତି ହେଡ୍‌ମାଷ୍ଟ୍ରେ । ବଡ଼ ଶୀର୍ଣ୍ଣ ଦେଖାଯାଉଛନ୍ତି । ମୁହଁର ପାଚିଲା ଦାଢି ଛାତି ଉପରକୁ ଝୁଲି ପଡ଼ିଛି । ଆଖିରେ ସେଇ ସୁନା ଚଷମା ଚକ୍‌ଚକ୍ କରୁଛି । ସବୁଦିନ ପରି କାନ୍ଧରେ

ଏକ ସିଲ୍କ ଚଦର । କୋଳରେ ବସିଛି ଝିଅ ରିନା । ପୁଅ ଟୁନୁ କାନ୍ଧ ପାଖରେ ମୁହଁ ଗୁଞ୍ଜି କ'ଣ ସବୁ କହୁଛି । ଆଙ୍ଗୁଳିରେ ରିନାର ଝୁରୁଝୁରିଆ ବାଳ ସଜାଡ଼ି ଦେଉଁ ଦେଉଁ ଏଣେ ଟୁନୁ କଥା ମନ ଦେଇ ଶୁଣି ହୋ ହୋ ହୋଇ ହସୁଛନ୍ତି । ଟୁନୁ ପିନ୍ଧିଛି ସ୍ଲିପିଂ ସୁଟ୍, ରିନା ଅଲ୍‌ସଟର । ଚୂର୍ଣ୍ଣ କେତେକ କଥାବାର୍ତ୍ତା କାନରେ ଆସି ପଡ଼ିଲା ।

ଟୁନୁ—ଏୟ ରିନା, ଏ ଗ୍ରାଣ୍ଡ ଓଲଡ୍ ମ୍ୟାନ୍ ଠିକ୍ କାହା ପରି ଦେଖାଯାଉଛନ୍ତି, କହିଲୁ ? ସାଣ୍ଟାକ୍ଲସ, ନୁହେଁ ? ଆମେ ଏହାଙ୍କୁ ଫାଦର କ୍ରିସମାସ୍, ଖାଲି 'ଫାଦର' ଡାକିବା, (ତା'ପରେ ହେଡ୍‌ମାଷ୍ଟ୍ରଙ୍କ ଆଡ଼େ) ଆପଣଙ୍କର କିଛି ଆପତ୍ତି ନାହିଁ ତ ?

ହେ: ମା:—ନା, ନା, ମୁଁ ଭରି ଖୁସି । ମୁଁ ତୁମର ଫାଦର କ୍ରିସମାସ । ଚମତ୍କାର ! (ବୁଢ଼ା ଓ ପିଲାଙ୍କର ହୋ ହୋ ହସ)

ହେ:ମା:—ଆଛା, ପିଲାଏ, ତୁମେ ଯେଉଁ ସବୁ ପଦ୍ୟ ମୁଖସ୍ଥ କରିଛ ସେଥିରୁ ଗୋଟେ ଫାଦର କ୍ରିମମାସ୍‌କୁ ଶୁଣେଇଲ ।

ଟୁନୁ—ଶୁଣିବେ ଫାଦର, ମୁଁ ରେସିଟେସନରେ ଯେଉଁ ଗଇମ୍ ବୋଲି ପ୍ରାଇଜ ପାଇଥିଲି ?

ରିନା—ମୁଁ ଟୁନୁଠାରୁ ଆଉରି ଭଲ ରିସାଇଟ୍ କରିପାରେ ବୋଲି ଡାଡି ସବୁବେଳେ କହନ୍ତି । (ହେଡ୍‌ମାଷ୍ଟ୍ରଙ୍କ ମୁହଁକୁ ତା'ର ଛୋଟ ଛୋଟ ହାତରେ ନିଜ ଆଡ଼କୁ ଘୁରାଇନେଇ) ଶୁଣନ୍ତୁ ଆଗ ମୋ ରେସିଟେସନ୍ ।

ହେ;ମା:—(ଦୁଇ ପିଲାଙ୍କୁ ଛାତି ଉପରକୁ ଆଉଜାଇନେଇ) ଶୁଣିବି, ଶୁଣିବି, ସବୁ ଶୁଣିବି । ଆଛା, ରିନା, ତୁମେ ଆରମ୍ଭ କର । ତା'ପରେ ଟୁନୁର ପାଳି ।

ରିନା—(ମୁଣ୍ଡରେ ଆଙ୍ଗୁଳି ଘଷି ମନେ ପକାଇ) ହଁ, ମନେପଡ଼ିଛି, ଶୁଣନ୍ତୁ, କେମିତିକା ଫାଷ୍ଟକ୍ଲାସ୍ ରାଇମ୍—

Jack and Jill went up the hill
To fetch a pail of water,
Jack fell down and broke his crown
And Jill came tumbling after.

ଟୁନୁ—ହେଃ, ଟ୍ରାସ୍ ! ଫାଦର, ଶୁଣନ୍ତୁ ମୋରଟା, କେମିତି ଚମତ୍କାର !

Ba Ba black sheep
Have you any wool ?
Yes Sir, Yes Sir,
Three bags full;
One for my master, one for the dame,
One for the little child down the lane.

ତା'ପରେ ଟୁନୁ ଓ ରିନାଙ୍କର ସମବେତ କଣ୍ଠସ୍ୱର

Mary, Mary,
Quite contrary
How does your garden grow ?

ହେଡ୍‌ମାଷ୍ଟ୍ରଙ୍କ ହସ ଆଉ ଶୁଭୁନାହିଁ । କେତେ ସମୟ ପରେ ହେଡ୍‌ମାଷ୍ଟ୍ରଙ୍କ କ୍ଷୀଣ କଣ୍ଠ: "ଆଚ୍ଛା, ବାବା, ଓଡ଼ିଆ ପଦ୍ୟ କବିତା କିଛି ଶିଖିଛ ? ଯେମିତି ଧର—

'ସତ୍ୟପଥେ ଧର୍ମପଥେ
ଘେନିଯାଅ ମୋତେ,
ଭସାଅ ପରାଣ ମୋର
ତବ ପ୍ରେମସ୍ରୋତେ..'

(ରିନା ଓ ଟୁନୁଙ୍କର ବେଦମ ହସ । ମଝିରେ ମଝିରେ "ହାଓ ଫନି ! ହାଓ ସୁଇଟ୍ !")

ହେ:ମା:—ପଢିଛ ନା ପିଲାଏ—

ଯାହା ମୁଁ କରଇଁ ଯାହା ମୁଁ କହଇଁ
ଯାହା ମୁଁ ଚିନ୍ତଇ ମନେ,
ଜଗତର କର୍ତ୍ତା ପରମ ଈଶ୍ୱର
ଜାଣୁଛନ୍ତି ପ୍ରତିକ୍ଷଣେ ।

କିବା 'ବାଲ୍ୟକାଳୁ ଧର୍ମଧନ ମୁଁ ସଞ୍ଚିବି ଏ ଜୀବନ ଅନିଶ୍ଚିତ..

ଟୁନୁ ଓ ରିନା—(ଅସ୍ଥିର ହୋଇ) ନା, ନା, ଫାଦର, ଏ ତ ସବୁ ଓଲ୍‌ଡ୍ ଭର୍ଣ୍ଣାକୁଲର । ଆମେ ତ ଓଡ଼ିଆ ପଢୁନାହିଁ— ସବୁ ଇଂଲିଶ୍..

ହେ:ମା:—(କଣ୍ଠରେ କିପରି ଏକ ଆତଙ୍କ) ଆଚ୍ଛା, ତୁମେମାନେ ଓଡ଼ିଆ ଜାଣ ନାହିଁ, ଓଡ଼ିଆ ପଢିପାରିବ ନାହିଁ, ଓଡ଼ିଆରେ ଲେଖିପାରିବ ନାହିଁ ? ପଣକିଆ ?

ରିନା ଓ ଟୁନୁ—ନୋ, ନୋ, ଆମେ ବି-ଲ-କୁ-ଲ ଓଡ଼ିଆ ଜାଣୁନାହିଁ । ଫାଦର, ପଣକିଆ କ'ଣ ?

ହେ:ମା:—(ନୀରବ)

ହଠାତ୍ ରିନା ପାଟିକରି ଉଠିଲା, "ଫାଦର, ଆପଣ କିଛି ଖାଉନାହାନ୍ତି କାହିଁକି ? ଟି, କଫି, କୋକାକୋଲା ? କେଉଁଟା ଭଲ ଲାଗିବ କହନ୍ତୁ ନା ଫାଦର !" (କଣ୍ଠରେ କେମିତି ଅଳି, ଅଭିମାନ)

ଟୁନୁ—ଫାଦର, ଡାଡିଙ୍କର କ୍ୟୁବାନ୍ ସିଗାର ଅଛି—ଆଣିବି ଗୋଟେ ସେଥିରୁ ? ଭରି ଚମତ୍କାର ଫ୍ଳେଭର ।

ଟୁନୁ ଉଠିଯାଉଥିଲା । ହେଡ୍ ମାଷ୍ଟ୍ର ତାକୁ ଧରି ରଖି ହସି ହସି କହିଲେ, "ନାହିଁ ବାବା, ତୁମ ମା'ଙ୍କୁ ପଗ କହିଲି, ମୋର ସେ ସବୁ ଅଭ୍ୟାସ ନାହିଁ । ଆଚ୍ଛା, ପିଲାଏ, କହିଲ—ତୁମେ ସକାଳୁ କ'ଣ ଖାଇଛ ?"

ଟୁନ-ରିନା—କାହିଁକି, ବେଡ ଟି ! ବିଛଣାରେ ବସି ବସି ଗ୍ର ଖାଇଛୁଁ ।

ହେ: ମା:—କ'ଣ, ଗ୍ର ? (କେତେସମୟ ଚୁପ୍ ରହି) ତୁମ ବାପାଙ୍କ ଉଠିବା ଆଉ କେତେ ଡେରି ହେବ ?

ଟୁନ—(କାନ୍ଥର ଘଡ଼ିଆଡ଼େ ଗ୍ରହିଁ) ବର୍ତ୍ତମାନ ତ ଆଠଟା । ଆଉରି ଘଣ୍ଟାଏ । କାଲି କ୍ଲବ୍ ନାଇଟ୍ ଥିଲା ନା, ଡାଡି ଫେରୁ ଫେରୁ ବହୁତ ରାତି ହୋଇଯାଇଥିବ ।

ରିନା—ଏ ଟୁନୁ, ଶନିବାର ରାତିରେ ଡାଡି ଯେତେବେଳେ କ୍ଲବ୍‌ରୁ ଫେରନ୍ତି ତୃ ଦେଖିଛୁ ? ମୁଁ ଦେଖିଛି, ଥରେ ରାତି ଅଧରେ ମୋ ନିଦ ଭାଙ୍ଗିଗଲା । ତୁ ତ ପାଖ ଖଟରେ ସ୍ନୋର କରୁଥିଲୁ । (ଟୁନୁର ଭୀଷଣ ପ୍ରତିବାଦ- ମୁଁ କେବେ ସ୍ନୋର କରେ ନାହିଁ; ତୁ ରାତିସାରା ସ୍ନୋର କରୁ, ଯାହା ଫଳରେ ମୁଁ ଶୋଇପାରେ ନାହିଁ..।) ବାହାରେ ଗାଡ଼ି ରହିବାର ଶବ୍ଦ ଶୁଣି ଝରକା ପାଖକୁ ଯାଇ ପର୍ଦ୍ଦା ଘୁଞ୍ଚାଇ ଦେଖିଲି, ଡାଡିଙ୍କୁ ଗାଡ଼ି ଭିତରୁ ଡ୍ରାଇଭର ଓ ରହିମ୍ ଧରି ଓହ୍ଲାଇଦେଉଛନ୍ତି । ତା'ପରେ ଆଉ ଝରକାରେ ଦେଖିଲି, ମାମି ଯାଇ ଡାଡିଙ୍କୁ ଧରି ଧରି ଉପରକୁ ଆଣୁଛନ୍ତି । ଡାଡି ଗ୍ଲଲିପାରୁ ନ ଥାନ୍ତି, ଟଳ ଟଳ ହେଉଥାନ୍ତି । ଭାବିଲି, ଡାଡିଙ୍କୁ ଜର ହୋଇଛି । କିନ୍ତୁ ତା ଆରଦିନ ଡାଡି ତ ଆମକୁ ନେଇ ପିକ୍‌ନିକ୍‌ରେ ଯାଇଥିଲେ ।

ଟୁନୁ—ଏଃ, ଚୁପ, ଚୁପ ! ତୁଟା ତ୍ରଛା ହୁଷ୍ଟୀଟେ । ଶୁଣ୍, କାହାକୁ ଏ କଥା କହିବୁ ନାହିଁ । ଫାଦର କ୍ରିସମାସ ଶୁଣିଲେ ଶୁଣିଲେ । (ତା'ପରେ ହେଡ୍‌ମାଷ୍ଟ୍ରଙ୍କ ଉଦ୍ଦେଶ୍ୟରେ) ଆପଣ ଏ କଥା ଡାଡିଙ୍କୁ କହିଦେବେ ନାହିଁଟି !

ରିନା—ଫାଦର, ଜାଣନ୍ତି ନା, ଆମ ଡାଡି କେତେ ସିଗ୍ରେଟ ଖାଆନ୍ତି ? ମାସକୁ ଥାର୍ଟି ଟିନ୍‌ସ । ସିଗ୍ରେଟ ସରିଗଲେ ଟିଣସବୁ ମୋର, କି ମଜା !

ହେଡମାଷ୍ଟରଙ୍କ କଣ୍ଠ ଆଉ ଶୁଣାଯାଉନାହିଁ । ତା'ପରେ କିଛିକାଳ ପିଲାମାନଙ୍କର କଳରବ—ହସ । ମଝିରେ ରହିମ୍‌ର ସତର୍କ ବାଣୀ—"ବାବା,

ମିସିବାବା, ଗୋସଲଖାନାମେ ଗରମ୍ ପାନି ଲଗାଦିୟା—ନାହାଲିଜୀୟେ—ସାଢ଼େ ଆଠ୍ ବଜ୍‌ଗୟୀ—ବେରେକ୍‌ଫାଷ୍ଟ ତୟାର ହୈ

କାନରେ ବାଜିଲା ହେଡ୍‌ମାଷ୍ଟ୍ରଙ୍କ ଅନୁଚ୍ଚ କଣ୍ଠସ୍ୱର — "ପିଲାଏ, ତୁମେମାନେ ଯାଅ, ଗାଧୋଇ ଖାଇବ, ଡେରି ହୋଇଗଲାଣି । ମୁଁ ଯାଉଛି । ବାପାଙ୍କୁ କହିବ, ତାଙ୍କ ପିଲାଦିନ ହେଡ୍‌ମାଷ୍ଟ୍ର ବୁଢ଼ା ଆସିଥିଲେ ।"

ହେଡମାଷ୍ଟ୍ର ଉଠି ଛିଡ଼ା ହେଲେ ।

ଟୁନୁ ଓ ରିନାଙ୍କର ସମବେତ 'ଟା' 'ଟା' ।

ଦରଜା ବନ୍ଦ ହେବାର ଶବ୍ଦ ।

ତା'ପରେ ସବୁ ଚୁପ୍‌ଚାପ୍ ।

ମୁଁ ଲେଣ୍ଡିଂ ଉପରେ ସ୍ଥାଣୁ ପରି ଛିଡ଼ା ହୋଇ ରହିଲି । ଓହ୍ଲାଇଯାଇ ହେଡ୍‌ମାଷ୍ଟ୍ରଙ୍କୁ ଅଟକାଇ ଫେରାଇ ଆଣିବାର ଶକ୍ତି, ସାହସ ମୋର ନ ଥିଲା । ଏ ଭଲ । ତାଙ୍କର ସନ୍ତାନପ୍ରତିମ ଆଦର୍ଶ ଛାତ୍ର ଗୋଲକନାଥକୁ ସେ ମୋ'ଠି ଆଉ ଖୋଜି ପାଆନ୍ତେ ନାହିଁ ।

ଡ୍ରେସିଂ ଗାଉନ୍‌ରୁ କାନ୍ଧ ଉପରେ କାହାର କରସ୍ପର୍ଶ ପାଇ ଫେରି ଚାହିଁଲି—କରୁଣା । ଛଳ ଛଳ ଆଖିରେ ସେ ମୋ ଆଡ଼େ ଚାହିଁଛନ୍ତି । ମୋ ଆଖିରୁ ଧାରଧାର ଲୁହ ଗଡ଼ିଯାଉଛି ।

କରୁଣାଙ୍କ ହାତ ଧରି ଧୀରେ ଧୀରେ ପାଉଞ୍ଚ ଚଢ଼ି ଉପରକୁ ଫେରି-ଆସିଲି ।

•

# ରାୟ

ଭଜହରି ମିଶ୍ର କେଉଁ ସୂତ୍ରରେ ମୋର ଅଜା ହେଲେ ସେକଥା ମୁଁ ବୁଝିବାକୁ ଚେଷ୍ଟା କରିନାହିଁ । ପିଲାଟିଦିନୁଁ ତାଙ୍କୁ ମୁଁ ଅଜା ବୋଲି ଡାକି ଆସିଛି । ଥଟ୍ଟା ପରିହାସ ହସକୌତୁକ ଭିତରେ ତାଙ୍କର ମୋର ସଂପର୍କ । ଗାଁରେ ତାଙ୍କ ଗ୍ଳଳକୁ ଗ୍ଳଳ ଲଗିଛି, ପିଣ୍ଡାକୁ ପିଣ୍ଡା । ପିଲାଦିନେ ଯେତେବେଳେ ସ୍କୁଲ ଛୁଟି ହେଲେ ଗାଁକୁ ଯାଏଁ, ମୋର ସମୟତକ ଭଜଅଜାଙ୍କ ଘରେ କଟେ । ଭରି ଭଲପାଆନ୍ତି ମୋତେ ଅଜା, ତା'ଠୁଁ ବଳି ଆଈ । ଭଜଅଜା ଦେଖିବାକୁ ଯେତିକି ଅସୁନ୍ଦର, ଆଈ ସେତିକି ସୁନ୍ଦର; ଦେବୀ ପ୍ରତିମା ପରି ଜଳୁଥାନ୍ତି ସେ । ମୁଁ ତାଙ୍କ ଗୋଡ଼ତଳେ ମୁଣ୍ଡିଆ ମାରିଲାବେଳେ ସାକ୍ଷାତ୍ ଦେବୀଙ୍କୁ ଜୁହାର ହେଲଭଳି ଲଗେ । ଭଜଅଜା ସାବନବର୍ଣ୍ଣର ଛୋଟିଆ ମଣିଷଟିଏ । ମୁଣ୍ଡରେ ବାଳ କେଇକେଗ ସବୁବେଳେ କୁଣ୍ଡା ହୋଇ ଅଣଓସାରିଆ କପାଳ ଉପରକୁ ପଡ଼ିଥିବ । ଦାଢଆ ନାକ, ଉଚ୍ଚା ଉଚ୍ଚା ଭ୍ରୂମଝିରେ ଯୋଡ଼ିଏ ଆଖି କୌତୁକରେ ଜୁଳୁଜୁଳୁ । ଅଜାଙ୍କ

ପରିଧେୟ—ବାହାରକୁ ବାହାରିଲେ ଖଣ୍ଡେ ତନ୍ତଲୁଗା ଓ ଅଧାହାତ ଅଧ-ମଇଳା ଧଳା ପଞ୍ଜାବୀ, ଗୋଡ଼ରେ ହଳେ ଦେଶୀ ଚଟି; ଘରେ ବା ଗାଁ ଭିତରେ ଆଣ୍ଠୁପର୍ଯ୍ୟନ୍ତ ଖଣ୍ଡେ ଛୋଟ ଲୁଗା ବା ଗାମୁଛା, ଖାଲି ଦେହ । ଛାତିର ହାଡ଼ ଗଣିହୋଇଯିବ । କିନ୍ତୁ ଅଜା କେବେ ବେମାର ପଡ଼ିଛନ୍ତି ଏକଥା ମୁଁ ଶୁଣିନାହିଁ ।

ଅଜା ଗାଁ ସ୍କୁଲର ହେଡପଣ୍ଡିତ । ସାଇକଲ ଚଢ଼ି (ଅଜା ସାଇକଲକୁ ସବୁବେଳେ ବାଇସାଇକଲ କହନ୍ତି) ସ୍କୁଲକୁ ଯାଆନ୍ତି । ଖରା ନାହିଁ, ବର୍ଷା ନାହିଁ, ଅଜା ଠିକ ଦଶଟାବେଳେ ତାଙ୍କ ବାଇସାଇକଲକୁ ପଦାକୁ ଟେକିଆଣି ଫୁଟ୍‌ପିନ୍‌ରେ ଗୋଡ଼ ରଖି କୁଦି କୁଦି ସାଇକଲ ଉପରକୁ ଚଢି ବସି ଧୀରେ ଧୀରେ ସ୍କୁଲକୁ ବାହାରିଯାଆନ୍ତି । ଭୋର ସକାଳୁ ବାଡ଼ିକାମ, କେଉଁଠି ବାଉଁଶ ଗଛ ମୂଳକୁ ମାଟି ଟେକିବା, ବାଇଗଣ ବାଡ଼ିକୁ ପାଣି ମଡ଼ାଇବା, ପୋଇଗଛ, ଲାଉଗଛ ମଞ୍ଚାରେ ଚଢ଼ାଇବା—ଏମିତି ଯାବତୀୟ କାମ । ତେଣେ ଆଇଙ୍କୁ ତର ନାହିଁ । ଘରଦୁଆର ଲିପାପୋଛା, ବେଲା ବାସନ ମଜା, ଧାନଉଁସା, ରନ୍ଧଣା । ପାଟି ନାହିଁ, ତର୍ଣ୍ଣ ନାହିଁ, ଯେଝା କାମ ଯେଝା କରିଯାଉଛନ୍ତି । ଏକ ଚମତ୍କାର ବୁଝାମଣା, ପରିପାଟୀ ଭିତରେ ଏଇ ଛୋଟ ସଂସାରଟି ବଡ଼ ଭଲ ଲାଗେ ।

ମୋର ଏଠି ଆନନ୍ଦରେ ମଜଗୁଲ ହୋଇଯିବାର ଆଉ ଏକ ବିଶେଷ କାରଣ—ପ୍ରଚୁର ଆଦରଯତ୍ନ, ତା ସାଙ୍ଗକୁ ଦିବ୍ୟ ଭୋଜନ । ଢିଙ୍କିକୁଟା ବାସନା ଗୁଉଳର ଗରମ ଭତରେ ଟକଟକ ଫୁଟୁଥିବା, ସାରଘର ମହକିଯାଉଥିବା ଚଉଳେ ହେବ ଗୁଆଘିଅ, ମୁଗଡାଲି, ବାଇଗଣ-ଦେଶୀଆଳୁ-ବଡ଼ି-ସଜନାଖଡ଼ା ତରକାରି, ପୋଇଅଗ-ଚୁଙ୍ଗୁଡ଼ି ଚୁଡ଼ୁଚୁଡ଼ା, ନେଉଟିଆ ଶାଗ ବା କେଉଁଦିନ ଛତୁ ପତରପୋଡ଼ା; କେତେ ରକମର ପିଠା, କାଞ୍ଜି, ଦହିଖୁଦ । ହଷ୍ଟେଲରେ ରହି ପେଟପାଟି ଶୁଖିଯାଇଥିଲା । ପାଟିକୁ ଏସବୁ ଯେମିତି ଅମୃତ । ଯାହା ସାଧାରଣତଃ ଖାଏଁ ତା'ର ଡବଲ ଡବଲ ଖାଇ ହୋଇଯାଏ । ଅଜା ପାଖରେ ବସାଇ ଖୁଆନ୍ତି; ଖାଇବାର ନାନା ଫିକର ଶିଖାଇ ଦିଅନ୍ତି—

"ଏମିତି ଆଙ୍ଗୁଳି ଅଗରେ କଣ ଟିକେ ଟିକେ ଖୁମ୍ପୁଛୁ ? ଭତ ଭଙ୍ଗିନେ, ଡାଲି ଢାଳି ଦେ, ହୁଁ, କଞ୍ଚା ଲଙ୍କା ସଜନାଶାଗରେ ମଡ଼ାଇ ଦେ । ସଲଗ ଭଜା ଭିତରୁ ମଞ୍ଜି ଟୁଙ୍କୁଛୁ କଣ ? ଦେ, ପୂର ଚମସୁଦ୍ଧା କାମୁଡ଼ି ଖା । ପୁଅଟା କିଛି ଖାଇ ଶିଖିନାହିଁ । ରହ, କାଲିକି ଜାଲ ପକାଇ ବଡ଼ମାଛ ଧରିଆଣିବି । ଏୟ୍, ଶୁଣୁଛ ଟିକି ! ମୁଁ କାଲି ହାତରେ ଗନ୍ଧି ପୁଅକୁ ଖୁଆଇବି ।"

ଏମିତି କେତେ ପ୍ରକାର ଖାଇବାର ଆୟୋଜନ, ମଉଜ ମଜଲିସ ଭିତରେ ମୋର ଛୁଟିର ଅଧିକାଂଶ ଦିନ ଗାଁରେ ଅଜାଙ୍କ ଘରେ କଟିଯାଏ । ଆମ ଘରକୁ ଫେରିଆସିଲେ ଭଇଭଉଣୀମାନେ ଥଟ୍ଟା କରି କହନ୍ତି—ଭଜ-ଅଜାଙ୍କ ନାତିଙ୍କୁ କଣ ଆମ ଘର ଆଉ ଭଲ ଲଗିବ !

କେବଳ ମୋତେ ନୁହେଁ, ଅଜାଙ୍କର ପିଲମାନଙ୍କୁ ଡାକି ଖୁଆଇବା ଯେପରି ଏକ ଝୁଙ୍କ ବା ସଉକ । ସାମାନ୍ୟ କିଛି ପୂଜା ବା ସତ୍ୟନାରାୟଣ ପାଲ ହେଲେ ସ୍କୁଲର ପିଲମାନଙ୍କୁ ଆଣି ବଙ୍ଗଳାଘରେ ଧାଡ଼ି ଧାଡ଼ି ବସାଇ-ଦେଇ, କଦଳୀ ପତରରେ ସିରିଣି, ତା' ସାଙ୍ଗକୁ ଲୁଚି, ତରକାରି, ଆମ୍ବ, ପଣସ ପରଷାଯିବ । କି ଆନନ୍ଦ ଅଜାଆଇଙ୍କର! ସେ ଦୃଶ୍ୟ ଭୁଲିବାର ନୁହେଁ ।

ସ୍କୁଲ ଛାଡ଼ି କଲେଜରେ ପଢିଲି । କଟକରୁ ଗଲି ପାଟନା । ନୂଆ ଦେଶ, ନୂଆ ପରିବେଶ ଭିତରେ ପିଲାଦିନ କଥା କ୍ରମେ ଭୁଲିହୋଇଗଲ । ଦିନେ କଣ ଗୋଟାଏ ଡ୍ରାମା ଦେଖି ଯାଇଥିଲି । ଏକ ବନ୍ଧ୍ୟା ନାରୀର ମର୍ମବେଦନା ସେଇ ନାଟକର ମୂଳବସ୍ତୁ । ଦେଖୁ ଦେଖୁ ମୁଗ୍ଧ, ବିଗଳିତ ହୋଇପଡ଼ିଲି । ମନଭିତରେ ଝଲସିଗଲ ଭଜଅଜା ଓ ଆଇଙ୍କ କଥା । ପ୍ରଥମ ଥର ପାଇଁ ଅନୁଭବ କଲି ଏକ କଠୋର ସତ୍ୟ—ଅଜାଆଇ ନିଃସନ୍ତାନ; ଉପଲବ୍ଧି କଲି ମାତ୍ର ହୃଦୟରେ ସନ୍ତାନଶୂନ୍ୟତାର ହାହାକାର । ଅନାଗତ ସେଇ ସନ୍ତାନ ପାଇଁ ଗଚ୍ଛିତ ଅଜାଆଇଙ୍କର ସକଳ ସ୍ନେହ କିପରି ଅଜସ୍ର ଧାରରେ ମୋ ଉପରେ ଓ ପିଲମାନଙ୍କ ଉପରେ ଅବାରିତ ଧାରରେ ଝରିପଡ଼ିଛି ! ଆଇଙ୍କ ମନରୁ ସେ ଦୁଃଖ ଭୁଲାଇବାପାଇଁ ଅଜାଙ୍କର

ସେ କି ଆପ୍ରାଣ ଚେଷ୍ଟା ! ଗଙ୍ଗାକୂଳରେ ବୁଲିଲାବେଳେ ସବୁ କଥା ଗୋଟି ଗୋଟି ହୋଇ ମନେପଡ଼େ । ଦୁଇ ଆଖିରେ ଲୁହ ଭରିଯାଏ ।

ତା'ପରେ ବହୁବର୍ଷ ଗଡ଼ିଯାଇଛି । ମୁଁ କଲେଜ ଛାଡ଼ି ଚାକିରିରେ ଯୋଗଦେଇ ଦେଶବିଦେଶ ଘୁରିଛି । ଜୀବନସଂଗ୍ରାମର ଘାତପ୍ରତିଘାତରେ ମୁଁ ପେଣ୍ଡୁଭଳି ଓଲଟି ଓଲଟି ଗଡ଼ି ଚାଲିଛି । ମଝିରେ ଥରେ ଖବର ପାଇଥିଲି, ଅଜା ତାଙ୍କ ଶଳାଙ୍କର ଗୋଟିଏ ପାଞ୍ଚ ଛଅ ବର୍ଷର ପୁଅକୁ ପୋଷ୍ୟପୁତ୍ର କରି ଆଣିଛନ୍ତି । ଶୁଣି ଭାରି ଆଶ୍ୱସ୍ତ ବୋଧ କରିଥିଲି, ଯାହାହେଉ, ଅଜାଆଈଙ୍କ ଶୂନ୍ୟ ଘର କିଛିମାତ୍ରାରେ ପୂରିଉଠିଥିବ । ସେମାନଙ୍କ ଭଙ୍ଗା ହୃଦୟରେ ଟିକେ ଆଶ୍ୱାସନା ମିଳିଥିବ ।

ଅନେକ ଦିନ ପରେ ଥରେ କଟକ ଆସିଥିଲି । ବାପାବୋଉଙ୍କ ପାଖରେ କେବଳ ଯୋଡ଼ିଏ ଦିନ ଥିଲି । ଗାଁକୁ ଯିବାକୁ ସମୟ ନ ଥିଲା । ସେଇ ସମୟରେ ଗାଁରୁ ରତନା'ଦା ଆସିଥିଲେ । ତାଙ୍କ ମୁହଁରୁ ଭଜଅଜାଙ୍କ ବିଷୟରେ ଏକ ଅଦ୍ଭୁତ କଥା ଶୁଣିଥିଲି ।

ଭଜଅଜାଙ୍କ ପୁଅ ବିଷ୍ଣୁ ଓ ବଇଁଶୀ ମୁଦୁଲି ପୁଅ ଖେଳୁ ଖେଳୁ ମାଡ଼ ମରାମରି ହେଲେ । ବଇଁଶୀ କା'ଡ଼େ ପଶିଆସି ବିଷ୍ଣୁକୁ ଚାପୁଡ଼େ ମାରିଲା ଓ ତା'ମା'କୁ ଗାଳିଗୁଲଜ କଲା । ସେଇ ରାଗରେ ଭଜଅଜା ବଇଁଶୀ ନାମରେ ଏକ ମିଛ ମକଦ୍ଦମା ଦାୟର କରିଦେଲା । ଜମିବାଡ଼ି ବନ୍ଧାଦେଇ ଟଙ୍କା ଆଣି ସବୁ ବଡ଼ ବଡ଼ ଓକିଲଙ୍କୁ ଲଗାଇଲା । ଶେଷରେ ବଇଁଶୀକୁ ତିନି ମାସ ଜେଲ ହୋଇଗଲା । ଜେଲରୁ ଫେରି ଗାଁରେ ବଇଁଶୀ ଆଉ ମୁହଁ ଦେଖାଇ ପାରିଲା ନାହିଁ; ଦଉଡ଼ି ଦେଇ ମଲା । ଗାଁଯାକ କହୁଛନ୍ତି, ଭଜହରି ବଇଁଶିଆକୁ ଜୀବନରୁ ମାରିଦେଲା ।

ସେ ଅନେକ ଦିନର କଥା । ମୋର କ୍ରମବର୍ଦ୍ଧମାନ ଦାୟିତ୍ୱ ଓ ସଂସାର ଭାରରେ ମୁଁ ସେତେବେଳେ ନିମଜ୍ଜମାନ । ଗାଁ ସହିତ ସଂପର୍କ ପ୍ରାୟ ବିଚ୍ଛିନ୍ନ ହୋଇଯାଇଥିଲା । ବହୁବର୍ଷ ବାହାରେ ବାହାରେ କଟାଇ ପୁଣି କଟକକୁ ବଦଳି ହୋଇ ଆସିଲି ପ୍ରାୟ ପନ୍ଦର ବର୍ଷ ପରେ ।

ପୁଅ ବ୍ରତଘର । ବନ୍ଧୁବାନ୍ଧବମାନଙ୍କ ଦୀର୍ଘ ଲିଷ୍ଟ ତିଆରି ଚାଲିଛି । ନିମନ୍ତ୍ରଣପତ୍ର ଲେଖା ହେଉଛି । ବଡ଼ ପୁଅ, ପ୍ରଥମ କାର୍ଯ୍ୟ । ଘମାଘୋଟ ଆୟୋଜନ ଚାଲିଛି ।

ହଠାତ୍ ମନେପଡ଼ିଗଲା ଭଜଅଜାଙ୍କ କଥା । ନିମନ୍ତ୍ରଣପତ୍ରଟିଏ ଡାକରେ ପଠାଇଦେଇଥିଲି । ବ୍ରତଘରଦିନ ସକାଳୁ ଦେଖେ ଭଜଅଜା ରିକ୍ସାରୁ ଓହ୍ଲାଉଛନ୍ତି । ଠିକ୍ ସେଇ ଚେହେରା, ଅଧାହାତ ଧଳା ପଞ୍ଜାବୀ । ରିକ୍ସାରୁ ଦୁଇ ତିନିଟା ବୋଝ ଓହ୍ଲାଯାଉଛି—କେଉଁଥିରେ ବୋଇତ-କଖାରୁ, ଦେଶୀଆଳୁ ବାଡ଼ି ବାଇଗଣ, କଦଳୀ, କେଉଁଥିରେ ଚୁଡ଼ା, ନଡ଼ିଆ ଇତ୍ୟାଦି ।

ଯାଇ ଗୋଡ଼ତଳେ ମୁଣ୍ଡିଆ ମାରିଲି । ଦି'ହାତରେ ମୋତେ ଉଠାଇ-ନେଇ ଠିକ୍ ସେଇ ପିଲାଦିନ ଭଳି ଛାତିରେ ଜାକିଧରିଲେ । ଭଜଅଜାଙ୍କ ଓଠରେ ସେଇ କୌତୁକ ହସ ଲାଗିରହିଛି । କୋଟରଗତ ଆଖିତଳୁ ଅବାରିତ ସ୍ନେହ ଝରିପଡୁଛି ।

ସେଇ ଯାହା ସକାଳେ ଦେଖା, କଥାବାର୍ତ୍ତା । ତା'ପରେ ବ୍ରତଘର କାମରେ ସମସ୍ତେ ମାତିଯାଇଛନ୍ତି । ଭଜଅଜା ସରଘର ଚାର୍ଜ ନିଜେ ନିଜେ ଆବୋରିନେଇଛନ୍ତି । କେତେ ଘଣ୍ଟା ଭିତରେ ସବୁ କଥାକୁ ସେ ନିଜ ଅକ୍ତିଆରକୁ ନେଇଗଲେ । ସମସ୍ତିଙ୍କ ମୁହଁରେ ଭଜଅଜା, ଭଜବାବୁ ।

କାର୍ଯ୍ୟଟି ନିର୍ବିଘ୍ନରେ ସମାପନ ହେଲା । ଖରଦିନ ରାତି । ଜହ୍ନ ପଡ଼ିଛି । ପବନ ବୋହୁଛି । ଲନ୍‌ରେ ବେତ ଚେୟାରରେ ବିଶ୍ରାମ କରୁଥିଲି । ପାଖ ଚୈୟାରରେ ଆସି ବସିଲେ ଭଜଅଜା । ମୋ ହାତକୁ ଖଣ୍ଡେ ସାଦା ପାନ ବଢ଼ାଇଦେଇ ନିଜେ ଖଣ୍ଡେ ପାନ ଖାଇଲେ । ଜାମା ପକେଟରୁ କିମାମ ଡବା କାଢ଼ି ଖଣ୍ଡେ ଖଡ଼ିକା ଅଗରେ ବୁନ୍ଦାଏ ନେଇ ପାଟିରେ ଦେଲେ । ନାନା କଥା ପଡ଼ିଲା । ହଠାତ୍ ମନେ ପଡ଼ିଗଲା ରତନା'ଦାଠୁ ଶୁଣିଥିବା ବଇଁଶୀ ମୃଦୁଲିର ଆତ୍ମହତ୍ୟା କଥା । ଅଜା ପାନ ଚୋବାଉଛନ୍ତି । ପବନରେ

କିମାମ୍‌ର ମହକ । କଥାକଥାକେ ହସ ଥଟ୍ଟା । ଅସମ୍ଭବ, ଭଜଅଜାଙ୍କ ଦ୍ୱାରା ଏଭଳି ଗର୍ହିତ କାମ କେବେ ହୋଇ ନ ପାରେ । ରତନାଦା'ଟା ବୃଦ୍ଧ ଟାଉଟର । ଗୁଡ଼ାଏ ମିଛକଥା ଫାନ୍ଦି ଅଜା ନାଁରେ କହୁଥିଲା । କିଛି ଫନ୍ଦିଫିକର ଥିବ । ଖାଲି ମଜା ଦେଖିବା ପାଇଁ ଅଜାଙ୍କଠାରୁ ଗପଟା ଜମେଇକରି ଶୁଣିବା ପାଇଁ କହିପକାଇଲି

"ଆଛା, ଅଜା, ଗୋଟାଏ କଥା ପଗ୍ଚରିବି, କହିବ ନା ?"

ଅଜା ଆରେ, ପଗ୍ଚରୁନୁ, କଣ ପଗ୍ଚରିବୁ । ଏତେ ଭୂମିକା କାହିଁକି ?

ମୁଁ ଏହ ବଇଁଶୀ ମୁଦୁଲି କଥା—ସେ କେମିତି ଦଉଡ଼ି ଦେଇ ମଲା, ସେଇ ଗପ କୁହ ।

ଅଜା : ହୁଁ, ତୋତେ ଏ ଖବର କିଏ ଦେଲା ? (କଣ୍ଠ ହଠାତ୍ ଭରୀ)

ମୁଁ : ରତନା'ଦା । ସେ ଯାହା କହିଥାଉ, ତୁମ ମୁହଁରୁ ସତ ଘଟଣାଟା ଶୁଣିବି । କୁହନା !

ଅଜା ଆଗେ ତୁ କହିଲୁ, କଣ କଣ ଶୁଣିଛୁ ?

ମୁଁ ଆଛା, ମୁଁ ଯାହା ଶୁଣିଛି, କହିଯାଉଛି । କେଉଁଟା ସତ, କେଉଁଟା ମିଛ ତୁମେ କହିଦେବ, ହେଲା ? ତୁମ ପୁଅ ବିଷ୍ଣୁ ପିଲାଙ୍କ ସଙ୍ଗେ ଖେଳୁ ଖେଳୁ ବଇଁଶୀ ମୁଦୁଲି ପୁଅ ସଙ୍ଗେ ମାଡ଼ ମରାମରି ହେଲା । ସେଠୁ ବଇଁଶୀ ମୁଦୁଲି ବାହାରିଆସି ବିଷ୍ଣୁକୁ ଚଟକଣିଟିଏ ପକାଇଲା..

ଅଜା କହିଯା, ଅଟକିଲୁ କାହିଁକି ?

ମୁଁ ତା'ପରେ ଆଈ ବାହାରିଆସି ବିଷ୍ଣୁକୁ କାଖ କରି ନେଇଆସିଲେ । ବଇଁଶୀ ମୁଦୁଲି ତାଙ୍କୁ କୁଆଡ଼େ ଭରି ଗାଳିଗୁଲଜ କଲା । ଆଈ କାନ୍ଦିକାଟି ଅସ୍ଥିର ।

ଅଜା ତା'ପରେ ?

ମୁଁ  ତା'ପରେ ତୁମେ ସ୍କୁଲରୁ ଫେରିଲ, ସବୁ ଶୁଣିଲ । ପୁଅକୁ ସାଇକଲରେ ବସାଇ କୁଆଡ଼େ ନେଇଗଲ । ଫେରିଲ ରାତି ଦଶଟାରେ । ପୁଅର ଛାତି ଓ ହାତକୁ ମିଶାଇ ଏକ ମସ୍ତବଡ଼ ବେଣ୍ଡେଜ୍ ବନ୍ଧା । ସତ ନା ?

ଅଜା  ସତ ।

ମୁଁ  ତା'ମାନେ ମିଛ ସାଟିଫିକେଟ ?

ଅଜା  ହଁ ।

ମୁଁ :ତା ଆରଦିନ ସକାଳେ ସହରକୁ ଯାଇ ବଇଁଶୀ ନାଁରେ ମକଦମା ଦାୟର କରିଦେଲ । ସତ ?

ଅଜା  ସତ ।

ମୁଁ  ଯେତେଯେତେ ବଡ଼ ଓକିଲ ଥିଲେ ସମସ୍ତଙ୍କୁ ଲଗାଇଦେଲ; ଆଈଙ୍କ ଗହଣାତକ ବନ୍ଧା ଦେଇ ଟଙ୍କା କରଜ କରି ମିଛ ମକଦ୍ଦମାରେ ଢାଳିଲ । ସତ ?

ଅଜା  ସତ ।

ମୁଁ  ଆଉ ନାନା ସୂତ୍ର ଧରି ବଇଁଶୀର କିମିତି ଜେଲ ହେବ ତା'ର ବ୍ୟବସ୍ଥା କରିଦେଲ ।

ଅଜା  ହଁ । ଯେମିତି ହେଉ, ବଇଁଶୀ ହାତକଡ଼ା ପିନ୍ଧି ଜେଲକୁ ଯିବ, ସେତକ କରିବାପାଇଁ ଯେତେ ଯାହା ଦରକାର, ସବୁ କରଯାଇଥିଲା ।

ମୁଁ : ମୁଦୁଲିର ଜେଲ୍ ହେଲା । ତିନିମାସ ଜେଲ ଭୋଗି ଗାଁକୁ ଫେରିଲା । ଦାଗୀ ବୋଲି କହି ଗାଁ ଲୋକେ ଦୂର ଦୂର କଲେ । ଗାଁରେ ସେ ବାଛନ୍ଦ ହେଲା । ଭାରି ଅଭିମାନୀ ଲୋକ ସେ, ଅପମାନ ସହି ନ ପାରି ଦଉଡ଼ି ଲଗାଇ ଆତ୍ମହତ୍ୟା କଲା । ସତ ନା ?

ଅଜା  ହଁ, କିନ୍ତୁ ବାପା, ଅସଲ ମଜା ଜାଗାଟା ତ ଛାଡ଼ିଗଲୁ । ଯେଉଁଦିନ ମୁଦୁଲିର ମକଦ୍ଦମାର ରାୟ ବାହାରିବ ସେଇବେଳ କଥା—

(ଅଜା ବଟାରୁ ଖଣ୍ଡେ ପାନ କାଢ଼ି ପାଟିରେ ଭର୍ତ୍ତି କଲେ, କିମାମ୍ ଡବାରୁ ଟିକେ କିମାମ୍ । ଚେୟାର ଉପରକୁ ଦୁଇଗୋଡ଼ ଟେକିନେଇ ଟିକେ ଆରାମରେ ବସି) ମୁଁ ତ ଆଗରୁ ସବୁ ଜାଣିଥାଏ । ଓକିଲ କହିଥାନ୍ତି, 'ବଇଁଶୀ ମୁଦିଲିର ନିର୍ଘାତ ଜେଲ' ଏକଥା ନିଶ୍ଚିତ । ମକଦ୍ଦମା ଡାକରା କେତେବେଳକୁ ହେବ ତା' ବି ଯୋଗାଡ଼ କରି ଜାଣିଯାଇଥାଏଁ । ଗୁଲିଡ୍ରାଇଭରକୁ ମନେ ଅଛି ନା? ସେଇ ଗୁଲି ମିଆଁର ହାଫଟନ୍ ବସ୍ ରିଜର୍ଭ କରିଥାଏଁ । ମୋର ସବୁ ସାକ୍ଷୀସାବୁତ ଆଉ କେତେକ ଗାଁବାଲା ସେଇ ବସ୍‌ରେ ବୁହାହୋଇ ଆସିଥାନ୍ତି । ଦି'ହାଣ୍ଡି ମିଠେଇ, ଲଡୁ, ପାନସିଗ୍ରେଟ୍ କିଣିଆଣି ସେମାନଙ୍କ ହାତରେ ଧରାଇଦେଇ କହିଲି, 'ଏଇ ମଟରଗାଡ଼ିରେ ବସି ଖାଉ ଥା ।' ମକଦ୍ଦମା ଡାକରା ହେଲା, ରାୟ ବାହାରିଲା । ଜେଲ ଭ୍ୟାନର ଖଣ୍ଡେ ଦୂରରେ ଗୁଲିମିଆଁ ତା ଗାଡ଼ି ଲଗାଇଦେଇଥାଏ । ସିପାହୀ ପିଆଦା ମୁଦୁଲିକୁ ହାତକଡ଼ା ପିନ୍ଧେଇ ନେଇଆସି ଜେଲଭ୍ୟାନ ଭିତରେ ଭର୍ତ୍ତି କରିଦେଲେ । ଗୁଲିମିଆଁ ଗାଡ଼ି ଇଷ୍ଟାଟ୍ କରିଦେଇଥାଏ—ଘୁଟୁଘୁଟୁ, ଘୁଟୁଘୁଟୁ । ଜେଲଗାଡ଼ି ଜାଲି ପଛଆଡ଼େ ମୁଦୁଲି ମୁହଁକୁ ତଳକୁ କରି ବସିଥାଏ । ମୁଁ ସେଇ ଜାଲିପାଖକୁ ଲାଗିଯାଇ କହିଲି, 'ବଇଁଶିଆ, ଏବେ ହେଲା ?' (ଅଜାଙ୍କ କଣ୍ଠ କିମିତି ବିକୃତ ଓ ଭୟଙ୍କର)

ମୁଁ ଚିତ୍‌କାର କରିଉଠିଲି—ଥାଉ, ଥାଉ, ଆଉ କହନାହିଁ । କି ଭୟଙ୍କର କି ନୃଶଂସ ସତେ ତୁମେ ! ତା'ପରେ ଜେଲରୁ ଫେରି ବେକରେ ଦଉଡ଼ି ଲଟକାଇ ମରିବା ଛଡ଼ା ବଇଁଶୀ ପାଇଁ ଆଉ କି ବାଟ ରଖିଥିଲ ତୁମେ ? ଆଚ୍ଛା, ଅଜା, ସେ ତ କେଉଁ ପୁରୁଣା କଥା । ବଇଁଶୀ ମରିଯିବାର ଦଶ ବାର ବର୍ଷ ହୋଇଗଲାଣି । ନିଜର କୃତକର୍ମ ଭାବି ତୁମର କେବେ ଅନୁତାପ ହୁଏ ନା ?

ଅଜା : (ଉତ୍ତେଜିତ କଣ୍ଠରେ) କଣ କହିଲୁ ? ଅନୁତାପ ? ଅନୁତାପ ଫନୁତାପ ମୋର ନାହିଁ । ଜାଣୁ, ସେ କଣ କରିଥିଲା—ବିଚ୍ ଗାଁ ଦାଣ୍ଡରେ ସେ କଣ କହି ତୋ ଆଇକୁ ବେଜିତ୍ କରିଥିଲା ? ତୁ ପୁଅ; ତୋତେ

ସେଗୁଡ଼ା କଣ କହିବି ! କହିଲ, 'ପୁଅ ଦେଖାଉଛି ! କି ପୁଅ ବେ ! ଭଙ୍ଗାର ପୁରୁଷପଣିଆ ଥିଲ ତ ପୁଆ ଜନ୍ମ କଲନାହିଁ । ଶଳାଠୁ ମାଗିଆଣି ବାପ ଫିଟିଛି । ଆ, ମୋ ପାଖକୁ ଆ, ପୁରୁଷପଣିଆ କଣ, ବୁଝିବୁ—ତୋ କୋଳ ଭର୍ତ୍ତି କରିଦେବି ।' ନା, ପୁଅ, ତୁ ମୋତେ ସେ ପୁରୁଣା କଥା ଆଉ ମନେପକାଇ ଦେ' ନା । ମୁଁ ଆଉ ଟିକେ ଆଗରୁ ଆସି ପହଞ୍ଚିଯାଇଥିଲେ କଥା ଅନ୍ୟରକମ ହେଇଯାଇଥାନ୍ତା—ମୁଁ ତାକୁ ନିଶ୍ଚେ ହାଣିପକାଇଥାନ୍ତି । ସେ ଜେଲରେ ତିନିମାସ ରହିଲ କଣ, ମୋର ଆଜୀବନ କାରାଦଣ୍ଡ ହୋଇଥାନ୍ତା ବା ଫାସୀଖୁଣ୍ଟ । ସେ ଭଲ । ଯେ ପୁରୁଷ ହୋଇ ତା' ସ୍ତ୍ରୀର ମାନ ଇଜତ ରକ୍ଷା କରିବାକୁ ଅସମର୍ଥ ସେଭଳି ଦୁର୍ବଳ ଅପଦାର୍ଥ ଅଣପୁରୁଷ ହେବାଠାରୁ ଅନ୍ୟାୟ ଅଧର୍ମ ବିରୁଦ୍ଧରେ ଲଢ଼ି ଫାସୀଖୁଣ୍ଟରେ ଝୁଲିବା ହଜାରେ ଗୁଣ ଶ୍ରେୟସ୍କର ।

କିଛି ସମୟ ଚୂପ୍ ରହି ଅଜା ପୁଣି କହିବାକୁ ଲଗିଲେ—"ମନେ ଅଛି, ପିଲଦିନେ ତୋତେ କେତେ ମହାଭରତ ଗପ କହି ଶୁଣାଉଥିଲି । କୁରୁସଭ ମଝିକୁ ଦୁଃଶାସନ ଦ୍ରୌପଦୀଙ୍କୁ ଘୋଷାରିଆଣି ତାଙ୍କୁ ବିବସନା କରିବାକୁ ଉଦ୍ୟତ । ଜଣଜଣ କରି ପଞ୍ଚପତିଙ୍କୁ, ସବୁ ମହାରଥୀଙ୍କୁ, କାନ୍ଦି କାନ୍ଦି କି ବିକଳ ହୋଇ ଦ୍ରୌପଦୀ ଅନୁନୟ କରିଛନ୍ତି ତାଙ୍କୁ ଏ ଚରମ ଅପମାନ ଓ ଲଞ୍ଛନାରୁ ରକ୍ଷା କରିବାପାଇଁ ! ସମସ୍ତେ ମୁହଁ ପୋତି ବସିରହିଲେ ମୂକ, କ୍ଲୀବ, ସ୍ଥାଣୁ । ସାର ମହାଭରତରେ ଧର୍ମ ଓ ନ୍ୟାୟର ଯା'ଠୁ ବଳି ବଡ଼ ପରଜୟର ଦୃଷ୍ଟାନ୍ତ ଆଉ ନାହିଁ । ଧର୍ମରଜ ଯୁଧିଷ୍ଠିର ହେଉନ୍ତୁ ବା କେଶବସଖା ଅର୍ଜୁନ ହେଉନ୍ତୁ, କାହାରିକୁ ମୁଁ ଏଥିପାଇଁ କ୍ଷମା କରିପାରି-ନାହିଁ । ସେମାନେ ପ୍ରତ୍ୟେକେ ଏକ ଅକ୍ଷମଣୀୟ ଅପରଧରେ ଅପରଧୀ ।"

କିନ୍ତୁ ମୋ ମନ ବୁଝୁ ନାହିଁ । ଭିତରେ ଭିତରେ କୁହୁଳୁଛି । ଘୋର ମିଥ୍ୟାର ଆଶ୍ରୟ ନେଇ ଗୋଟାଏ ଜୀବନ ଧ୍ୱଂସ କରିଦିଆଗଲ, ଅଥଚ ସେଥିପାଇଁ ସାମାନ୍ୟ ଟିକେ ଅନୁଶୋଚନା ନାହିଁ ! କି ଧାତୁରେ ଗଢ଼ା

ଏଇ ବୃଦ୍ଧ ! କହିପକାଇଲି "ତଳ ଅଦାଲତରେ ସିନା ତୁମେ ଜିଣିଗଲ । ଉପରେ ତ ପୁଣି ଜଣେ ରହିଛି, ସବୁ ଦେଖୁଛି, ସବୁ ଜାଣୁଛି....

ଅଜା କଥା ଛଡ଼ାଇନେଇ କହିଲେ, "ଠିକ କହିଲୁ ପୁଅ, ଉପରେ ଜଣେ ଥାଇ ସବୁ ଦେଖୁଛି, ସବୁ ଜାଣୁଛି । ତା'ର ବିଗ୍ୱର, ତ'ାର ରାୟ ଅଲଂଘନୀୟ । ତା ନ ହୋଇଥିଲେ, କିଛି କୁଆଡ଼େ ନାହିଁ, ସାମାନ୍ୟ ଦି'ଦିନ ଜରରେ ବିଷ୍ଣୁଟା ଆମକୁ ଛାଡ଼ି ଗ୍ୱଲିଯାନ୍ତା କାହିଁକି ?"

ଏକ ତୀବ୍ର ଚିତ୍କାର ମୋ କଣ୍ଠରୁ ନିଃସୃତ ହେଲା—ନା, ନା !

ଅଜା ମନକୁମନ କହୁଛନ୍ତି, "କିନ୍ତୁ ଗୋଟାଏ କଥା ବୁଝିପାରୁନାହିଁ । ଦୋଷ ଯଦି ମୁଁ କଲି, ବିଧାତା ପୁରୁଷଙ୍କର ଯଦି ସେଇ ରାୟ ହେଲା, ତା' ହେଲେ ପ୍ରାଣଦଣ୍ଡ ପଡ଼ିଲା ଯାଇ ଏକ ନିରୀହ ଶିଶୁ ଉପରେ ! ଏ କେମିତିକା କଥା, ଏ କି ବିଗ୍ୱର ! ବିଧାତାଙ୍କ ସଙ୍ଗେ ମୁହାଁମୁହିଁ ହେଲେ ମୁଁ ସେଇକଥା ତାଙ୍କୁ ପଗ୍ୱରନ୍ତି । ସେଇ ଅପେକ୍ଷାରେ ମୁଁ ଦିନ ଗଣୁଛି !"

# ଭୁଲିପାରୁନାହିଁ

ଘଣ୍ଟାକଡ଼ ଗଛଛାଇରେ ଗାଡ଼ିଟାକୁ ରଖିଦେଇ ଡ୍ରାଇଭର ଓହ୍ଲାଇଗଲା ଚା' ଖାଇବାପାଇଁ । ଖୁଚୁରା ପଇସା ନ ଥିଲା । ତା' ହାତକୁ ଖଣ୍ଡେ ପାଞ୍ଚଟଙ୍କିଆ ନୋଟ୍ ବଢ଼ାଇଦେଇ ପଛ ସିଟ୍‌ରେ ଆଉଜି ବସିଲି । ଫ୍ଲାସ୍କରୁ ପାଣି ଢାଳି ପିଇଲି । ସିଗ୍ରେଟ୍ ଲଗାଇ ନୀଳ ଗଗ୍‌ଲସ୍ ତଳୁ ଚାରିଆଡ଼କୁ ଚାହିଁ ଦେଖିଲି । ଚୈତ୍ରମାସର ଶେଷଭାଗ । ଦିନ ଏଗାରଟା ପ୍ରାୟ । ଖରା ଖୁବ୍ ତେଜି ଉଠିଲାଣି । ବହୁତ ବାଟ ଯିବାକୁ ହେବ । ପହଞ୍ଚୁ ପହଞ୍ଚୁ ପ୍ରାୟ ଦେଢ଼ଟା ହୋଇଯିବ । ଘଣ୍ଟାକଡ଼ ଏହି ଛୋଟ ବଜାରଟିରେ ସମସ୍ତେ ଅଟକନ୍ତି ପନ୍ଦର ମିନିଟ୍ ବା ଅଧଘଣ୍ଟାଏ ଚା' ଜଳଖିଆ ପାଇଁ । ଆଉ ବାଟରେ ଦୋକାନ ବା ବଜାର ନାହିଁ ।

ବେଶ ଗରମ ପବନ ବୋହିବାକୁ ଆରମ୍ଭ କଲାଣି । ଡାହାଣପଟ ଝରକା କାଚଟାକୁ ଟେକିଦେଲି । ଗଗ୍‌ଲସ୍ ତଳୁ ଚାହିଁ ଦେଖିବାର ଗୋଟାଏ ମଜା ଅଛି । ନିଜେ ସବୁ ଦେଖୁଥିବ, ଅଥଚ କେହି ତୁମ ଆଖିକୁ ଦେଖିପାରୁ

ନ ଥିବେ । ଆଗ ଦୋକାନରେ ଗୋଟାଏ କିମ୍ଭୂତ କିମାକାର କଳା ମୋଟା ଲୋକ ନୀଳ ଲୁଙ୍ଗିଟାକୁ ଆଣ୍ଠୁ ପର୍ଯ୍ୟନ୍ତ ଟେକିଦେଇ ଗୋଟାଏ ବଡ଼ ଗଦି ଉପରେ ମାଡ଼ିବସି ତୂଳା ପୂରଉଛି । ଦେହସାରା ଓ ମୁଣ୍ଡରେ ଧଳାଧଳା ତୁଳା ଲାଗିରହିଛି । ପିଲାଦିନେ ମହାଭାରତରେ ଗୋଟାଏ ଛବି ଦେଖିଥିଲି– ଦୁଃଶାସନ ବକ୍ଷରୁ ଭୀମଙ୍କର ରକ୍ତପାନ । ସେଇ ଚିତ୍ର ମନେ ପଡ଼ିଗଲା । ହସି ପକାଇଲି । ଆଖି ବୁଲାଇନେଲି ।

ସେପଟ ପାନଦୋକାନ ଆଗରେ ସାଇକେଲରୁ ଅଧେ ଖସି, ଭୂଇଁରେ ଗୋଡ଼ ଲଗାଇ ଗୋଟିଏ ଯୁବକ–କଳା ଚିପା ପେଣ୍ଟ୍, ନାଲି ରଙ୍ଗର ହାଓ୍ୟାଇନ୍ ସାର୍ଟ, ଗୋଳିଆ କଳା ଜୋତା, କାନ୍ଧରୁ ଝୁଲୁଛି ଟ୍ରାନ୍‌ଜିଷ୍ଟର, ସେଥିରୁ ନିର୍ଗତ ହେଉଛି ହିନ୍ଦି ଫିଲ୍ମର ହିଟ୍ ଗୀତ–ଯୋଡ଼ିଏ ସିଗ୍ରେଟ୍ କିଣି ସେଥିରୁ ଗୋଟିଏ ଉପର ପକେଟ୍‌ରେ ଗୁଞ୍ଜିଦେଇ, ଅନ୍ୟଟିକୁ ଓଠ ଉପରେ ଥରେ ଗଡ଼ାଇନେଇ, ହାତ ପାଖରେ ଝୁଲୁଥିବା ଜଳନ୍ତା କତା ଦଉଡ଼ିରୁ ଧରାଇନେଲା; କଳେ ଧୂଆଁ ଛାଡ଼ିଲା । ମୋ ଗାଡ଼ି, ନମ୍ବର ପ୍ଲେଟ ଓ ମୋ ଆଡ଼େ ଥରେ ଆଖି ବୁଲାଇନେଇ, ଟ୍ରାନ୍‌ଜିଷ୍ଟରର ଭଲ୍ୟୁମଟାକୁ ଅକାରଣରେ ହଠାତ୍ ବଢ଼ାଇଦେଇ, ସାଇକେଲ୍‌ଟା ଉପରେ ଟିକେ ଝୁଙ୍କିପଡ଼ି କାଇଦାରେ କଟାଇନେଇ ବାହାରିଗଲା ।

ରାସ୍ତାକଡ଼ରେ ପସରା ମେଲି ବସିଛି ଗୋଟିଏ ପଶ୍ଚିମା ଫେରିବାଲା । କେତେଜଣ ଛିଡ଼ାହୋଇ ଦର ମୂଲଉଛନ୍ତି ଗୋଟାଏ ଛୋଟ ଟୋକା ସାଙ୍ଗରେ । ମାଲିକ ଖଣ୍ଡିଏ ଅଇନାରେ ନିଜକୁ ଯେପରି ହଜାଇ ଦେଇଛନ୍ତି । ନିବିଷ୍ଟ ଚିତ୍ତରେ ସେ ବୃଦ୍ଧାଙ୍ଗୁଳି ଓ ତର୍ଜନୀ ଦେଇ ତାଙ୍କର ଲମ୍ବା ନିଶଟାକୁ ଗୋଳିଆ କରି ଗୋଟାଏ ନିର୍ଦ୍ଦିଷ୍ଟ 'ଏଫେକ୍‌ଟ୍' ଦେବାକୁ ଚେଷ୍ଟା କରୁଛନ୍ତି । ଏଭଳି ଏକାଗ୍ରତା ସାଧାରଣତଃ ଦୃଷ୍ଟିରେ ପଡ଼େ ନାହିଁ ।

ଛୋଟ ଛୋଟ କେତୋଟି ପିଲା ଗାଡ଼ିପାଖକୁ ଲାଗିଆସି ଗାଡ଼ିର ଚକ୍ ଚକ୍ ପାଲିସ ଦେହରେ ମୁହଁ ଦେଖୁଥିଲେ; ଲମ୍ବା ମୁହଁ, ଚେପ୍‌ଟା ମୁହଁ ଦେଖୁ ଦେଖୁ ହସି ହସି ଗଡ଼ିଯାଉଥିଲେ । ଆଙ୍ଗୁଳିରେ ଗାର ଟାଣିବାକୁ କେତେଜଣ ଆରମ୍ଭ କରିଦେଇଥିଲେ । ଭିତରୁ ପାଟିକରିଉଠିଲି । ମୋ ଗଗ୍‌ଲସ୍ ଆଡ଼େ ଶଙ୍କିତ ଚାହାଣୀ ପକାଇ ସେମାନେ ଅପସରିଗଲେ ।

ଦେଖିଲି, ଗୋଟିଏ ବୁଢ଼ୀ ଆଗପଟୁ ଗାଡ଼ିଆଡ଼କୁ ଆସୁଛି । ଗୋଟେ ହାତରେ ଖଣ୍ଡେ ବାଡ଼ି, ଆର ହାତରେ ଏଲମୁନିୟମ ଥାଳି । ଅଣ୍ଟାପାଖରୁ ବୁଢ଼ୀଟି ବାଙ୍କିଯାଇଛି । ବାଡ଼ିରେ ଠୁକ୍ ଠୁକ୍ କରି ଧୀରେ ଧୀରେ ସେ ଆଗେଇ ଆସୁଛି । ବୁଢ଼ୀଟିର ମୁହଁଟି ଗୋରା ଟକ୍‌ଟକ୍, ଗୋଲ । ଅଜସ୍ର ବଳିରେଖାରେ ସାରା ମୁହଁଟା ଛାଇହୋଇଯାଇଛି । ବୟସ ଅଶୀରୁ କମ୍ ନୁହେଁ । ଅଥଚ ଆଖି ଦୁଇଟା ବେଶ୍ ଉଜ୍ଜ୍ୱଳ ଓ ସୁନ୍ଦର । ଦାନ୍ତ ସବୁ ପଡ଼ିନାହିଁ । ଓଠ ଝୁଲିଯାଇନାହିଁ । ଚିବୁକରେ କେମିତି ଗୋଟାଏ କମନୀୟ ଦୃଢ଼ତା । ହଠାତ୍ ମନେପଡ଼ିଗଲା ଜଗତର ଶ୍ରେଷ୍ଠ ଫଟୋଚିତ୍ର ସଂକଳନରୁ ଗୋଟିଏ ବୃଦ୍ଧାର ମୁଖର 'କ୍ଲୋସ୍‌ଅପ୍' । ଅବିକଳ ଏହି ମୁଖ ପରି । ଏକ ଅଦ୍ଭୁତ ସାମଞ୍ଜସ୍ୟ ଅଛି ଦୁଇ ମୁଖ ମଧ୍ୟରେ । ବଳିରେଖା ମଧ୍ୟରେ ଗୋଟାଏ 'ଡିଗ୍‌ନିଟି' ବା ଆଭିଜାତ୍ୟର ଛାପ ସ୍ପଷ୍ଟ; ଅକ୍ଲେଶରେ ଦର୍ଶକର ମନକୁ ସ୍ପର୍ଶ କରେ । କ୍ୟାମେରାଟା ବାକ୍ସ ମଧ୍ୟରେ ରହି-ଯାଇଛି । ଡ୍ରାଇଭର ଚା' ଖାଇ ଫେରିଲେ ଲଗେଜ ବୁଟ୍‌ରୁ ସୁଟକେସଟା କାଢି ତା'ଭିତରୁ ବାହାର କରିବାକୁ ହେବ କେମେରାଟା ଓ ସେଥିରେ ଧରି ରଖିବାକୁ ହେବ ଏଇ ବୁଢ଼ୀର ମୁହଁର ଡାହାଣ ପ୍ରୋଫାଇଲର ଏକ ଚମତ୍କାର 'କ୍ଲୋସ୍‌ଅପ୍' ।

ନିଜ କଳ୍ପନାରେ ମଗ୍ନ ହୋଇଯାଇଥିଲି । ହଠାତ୍ ତାଳ କଟିଗଲା । ଝରକା-କାଚ ଆରପଟେ ବୁଢ଼ୀ ତା'ର ଥାଳି ବଢ଼ାଇଦେଇ ବିଡ଼ି ବିଡ଼ି ହୋଇ କ'ଣ କହୁଛି । ସ୍ୱପ୍ନ ଭଙ୍ଗି ଚୁରମାର ହୋଇଗଲା । ଯେଉଁଠିକି ଯାଅ ସେଇ ଭିକାରିପଲ୍ଲ ! ବିରକ୍ତ ହୋଇଉଠିଲି । କାଚଟାକୁ ପୁରାପୁରି ଉଠାଇ ଦେଇ ହାତ ହଲାଇ ନାହିଁ କରିଦେଲି, ''ପଇସା-ପଇସି ମିଳିବ ନାହିଁ, ଯା, ଯା ।''

ଗଗ୍‌ଲସ୍ ତଳେ ଆଖି ଫେରାଇନେଇ ଆଗକୁ ଚାହିଁଲି । ରାସ୍ତା ଲମ୍ବିଯାଇଛି ବହୁଦୂରକୁ । ଘଡ଼ିଆଡ଼ ତାତିଗଲାଣି । ଡ୍ରାଇଭରଟା ଗଲା କେଉଁଆଡ଼େ ? ଟିକିଏ ଏମାନଙ୍କୁ ପ୍ରଶ୍ରୟ ଦେଲେ ତ ମୁଣ୍ଡରେ ଚଢ଼ିବେ !

ଭିକାରି ଓ ଏହି ଭିକ୍ଷାବୃତ୍ତି ଆମ ଜାତିର ଏକ କଳଙ୍କ । ସଭ୍ୟ ଦେଶମାନଙ୍କରେ ଭିକ୍ଷାବୃତ୍ତି ଆଉ ଏକ ସମସ୍ୟା ହୋଇ ନାହିଁ । ସବୁ ଗଷ୍ଟ୍ରାୟତ୍ତ । ଅଥଚ ଆମର ଏଇ ଇଣ୍ଡିଆରେ ଯେଉଁଠିକି ଯାଅ, ମନ୍ଦିର ହେଉ ବା ମସଜିଦ୍ ହେଉ, ସମୁଦ୍ର ସୈକତ, ନନ୍ଦନକାନନ—ସବୁଠି ଭିକାରିଙ୍କ ଦଳ; ଏଇଥିପାଇଁ ଆମର ଟୁରିଷ୍ଟ୍ ବ୍ୟବସାୟଟା ମାଡ଼ ଖାଇଯାଉଛି । ବିରକ୍ତିକର ।

ଆଉ ଗୋଟାଏ ସିଗ୍ରେଟ୍ ଧରାଇଲି । ଧୂଆଁ ଛାଡ଼ି ଏସ୍‌ପଟ୍‌ରେ ପାଉଁଶ ଝାଡ଼ିଲି । କେମିତି ଟିକେ ଅସ୍ୱସ୍ତି ବୋଧ କଲି । ଏଇ ସିଗ୍ରେଟ୍ ଖଣ୍ଡକର ଦାମ୍ ପନ୍ଦର ନୂଆପଇସା ନା ! ଏ ଯେଉଁ ଖଣ୍ଡଟା ଏଇକ୍ଷଣି ଲଗାଇଲି ସେଟା ତ ଆଦୌ ଦରକାର ନ ଥିଲା । ଗତ ଘଣ୍ଟାକ ମଧ୍ୟରେ ତିନିଟା ସିଗ୍ରେଟ ଟାଣିସାରିଲିଣି । ଖଗ ବଢିଗଲାଣି । ଭଲ ଲାଗୁନାହିଁ, ମୁଣ୍ଡ ଧରୁଛି । ଅଥଚ ଗୋଟାକ ପରେ ଗୋଟାଏ ସିଗ୍ରେଟ୍ ଓଠ ଭିତରେ ମାଡ଼ିଦେଇ ଲାଇଟରରୁ ନିଆଁ ଧରାଇ ଫୁଙ୍କିଦେଉଛି । ଏଥିରୁ ଗୋଟାକର ଦାମ, ବୁଢ଼ୀ ଥାଳିରେ ପକାଇଦେଲେ କେମିତି ହୁଅନ୍ତା ! ନିଜର ଶସ୍ତା ଭାବପ୍ରବଣତାରେ ନିଜେ ହସିଉଠିଲି । ଏସବୁ ତୁଚ୍ଛା ନାଟକୀୟତାର ବୟସ ବହୁଦିନୁ ଗଡ଼ିଯାଇଛି । ସିଗ୍ରେଟ ନ ଖାଇ ସେ ପଇସା ଦାନ କରିଦେବା....ଏମିତି ଭାବିଲେ ତ ଏ ଗାଡ଼ିଟାକୁ ବି ବିକିଦେଇ ସେ ଟଙ୍କାତକ ଦାନ ଖଇରାତ କରିଦେବାକୁ ହୁଏ ! ଟ୍ରେସ..!

ମୁହଁ ବୁଲାଇନେଲି; କିନ୍ତୁ ତଥାପି ମନତଳେ କଣ ଗୋଟାଏ ଖଚ୍ ଖଚ୍ କରୁଛି, ଗାଡ଼ି ଇଞ୍ଜିନରେ ଯେମିତି ମଝିରେ ମଝିରେ ହୁଏ । କରେଣ୍ଟ୍ ପାସ୍ କରୁଛି, ତେଲ ପାସ୍ କରୁଛି, ସବୁ ଠିକ୍, ତଥାପି କେମିତି ଗୋଟାଏ ଖଚ୍‌ଖଚ୍ ଆଓ୍ୱାଜ—ସେଇପରି ।

ବୁଢ଼ୀ ଗଛ ଛାଇରେ ଚୁପ୍ ହୋଇ ବସିରହିଛି । ମୁଣ୍ଡଟା ଛାତି ଉପରକୁ ଝୁଲିପଡ଼ିଛି । ପାଖରେ ବାଡ଼ି ଓ ସିଲଭର ଥାଳି ପଡ଼ିରହିଛି । ଥାଳିଭିତରୁ

ଦେଖାଯାଉଛି ଦୁଇ ଖ୍ୱରିଟା ଦିପଇସି, ପାଅପଇସି । ଝରକାକାଚ ଈଷତ୍ ଖସାଇଦେଇ ଅନୁଚ୍ଚରେ ଡାକିଲି, "ଏଯ, ବୁଢ଼ୀ !" ବୁଢ଼ୀ ମୁଣ୍ଡ ଟେକି ଗ୍ୱହିଁଲ । ବାଡ଼ିରେ ଭର ଦେଇ ଉଠିଲା ଓ ଥାଳି ଗୋଟାଇନେଇ ଗାଡ଼ି ପାଖକୁ ଆସି ଠିଆ ହେଲା । ପଗ୍ୱରିଲି, "ବୁଢ଼ୀ, ତୋର ଆଉସବୁ କିଏ ଅଛନ୍ତି ?" ବୁଢ଼ୀ କିଛି ସମୟ ଚୁପ୍ ହୋଇ କ'ଣ ଭବିଲା । ତା'ପରେ କହିଲା, "ସମସ୍ତେ ଅଛନ୍ତି—ପୁଅ, ବୋହୂ, ନାତି, ନାତୁଣୀ ।"

ଉତ୍ତର ସ୍ୱଷ୍ଟ ଓ ସରଳ । ଟିକିଏ ହେଲେ ବି ଖେଦ ବା ଆପତ୍ତି-ଅଭିଯୋଗର ଲେଶମାତ୍ର ସୂଚନା ନାହିଁ । ପଗ୍ୱରି ଆସୁଥିଲି, ତା'ହେଲେ ତୋର ଏ ଦଶା କାହିଁକି ? କିନ୍ତୁ ଅଟକିଗଲି । ବୁଢ଼ୀର କହିବା ଢ଼ଙ୍ଗରେ ଏମିତି କ'ଣ ଗୋଟାଏ ଥିଲା ଯାହା ମୋତେ ସତର୍କ କରିଦେଲା ।

ଗର୍ ଲସ ତଳୁ ଅଶୀତିବର୍ଷୀୟା ବୃଦ୍ଧାର ସେଇ ଜରଜୀର୍ଣ୍ଣ ରେଖାଙ୍କିତ ମୁଖ ଦେଖୁ ଦେଖୁ ଆଖି ଆଗରେ ଭସିଉଠିଲା ଆଉ ଗୋଟିଏ ମୁଖ । ସେ ମୁଖ ମୋର ଏକ ଦୂରସମ୍ପର୍କୀୟା ବୃଦ୍ଧାଙ୍କର, ଯାହାଙ୍କୁ ମୁଁ ଆଈ ବୋଲି ଡାକେଁ । ଅସ୍ଥିସାର କ୍ଷୀଣ ଦେହ; କିନ୍ତୁ ଅଦ୍ଭୁତ ଏକ ପ୍ରାଣଶକ୍ତି ଓ ଆତ୍ମ-ପ୍ରତ୍ୟୟ ସାର ଅଙ୍ଗରେ ଓ ମୁଖରେ ପରିସ୍ଫୁଟ । ଯୋଗ୍ୟ ଓ ସୁପ୍ରତିଷ୍ଠିତ ତାଙ୍କର ପୁତ୍ର, ପୌତ୍ର, ଜାମାତା । ପ୍ରତ୍ୟେକଙ୍କର ଆଗ୍ରହ ବୁଢ଼ୀଙ୍କୁ ନେଇ ପାଖରେ ରଖିବାକୁ । କିନ୍ତୁ ସେ ସକଳ ଅନୁରୋଧ ଆବେଦନକୁ ଏଡ଼େଇ-ଦେଇ ଏକୁଟିଆ ରହନ୍ତି ଦୂର ମଫସଲର ଏକ କୁଡ଼ିଆ ଘରେ । ନିଜ ହାତରେ ରୋଷେଇ କରି ଖାଆନ୍ତି କୁଆଁଏ ଗ୍ୱଉଳର ଭତ ଓ ସାମାନ୍ୟ ଟିକେ ତରକାରି ଓ ତା' କେବଳ ଗୋଟାଏ ବେଳା । ପୁଅମାନେ ଓ ଜୋଇଁ ବୁଢ଼ୀଙ୍କୁ ଟଙ୍କା ଦେବାକୁ, ଲୁଗାପଟା ଦେବାକୁ ବ୍ୟାକୁଳ । ବଡ଼ ଆଗ୍ରହରେ ଆଣି ଥୁଅନ୍ତି ନାନା ପଦାର୍ଥ, ଫଳମୂଳ; କିନ୍ତୁ ବୁଢ଼ୀ କିଛି ଗ୍ରହଣ କରନ୍ତି ନାହିଁ— 'ନା, ବାବା, ମୋର ଏସବୁ କ'ଣ ହେବ ? ବୋହୂ ଓ ପିଲମାନକୁ ଦିଅ । ତାଙ୍କ କଥା ବୁଝ । ସେମାନେ ଏ ସବୁର ଗୁଣ ବୁଝିବେ ।' କିଛି ନେବେ ନାହିଁ, ଅଥଚ ପୁଅବୋହୂଙ୍କ ପାଇଁ, ନାତିନାତୁଣୀଙ୍କ ପାଇଁ କେଉଁଠୁ କେଉଁଠୁ

ସଂଗ୍ରହ କରି ପଠାନ୍ତି ଖାଣ୍ଟି ଗୁଆ ଘିଅ, ଦେଶୀ ପାଚିଲା କଦଳୀ, ବାସନା ଢେଙ୍କିକୁଟା ଚାଉଳ । ନିତାନ୍ତ ଯାହା ନ ହେଲେ ନ ଚଳେ—ଲୁଗା ଖଣ୍ଡେ ବା ଅଳ୍ପ କେତେଟା ଟଙ୍କା ଗ୍ରହଣ କରନ୍ତି ଅତି କଷ୍ଟରେ । ଦେଖିଛି, ବଡ଼ ଚାକିରିବାଲା ତାଙ୍କ ପଅଙ୍କୁ ମା'ଙ୍କ ହାତରୁ ଛେନାଗଜା ନେଇ ଗୋଟାକ ପରେ ଗୋଟାଏ ପାଟିରେ ପକାଇଦେବାର । ବୁଢ଼ୀଙ୍କର ଆଖିରୁ ଯେପରି ଅମୃତ ଝରିପଡୁଥାଏ । ସେ ଦୃଶ୍ୟ ଭୁଲିବାର ନୁହେଁ । ରାସ୍ତାକଡ଼ର ଏଇ ଭିକାରୁଣୀ ବୁଢ଼ୀଟିକୁ ଦେଖୁ ଦେଖୁ ସେଇ ମୋର ଆଇଙ୍କ କଥା ବାରମ୍ବାର ମନେ ପଡ଼ିଲା ।

ଡ୍ରାଇଭର ଫେରିଆସି ମୋ ହାତରେ ଖୁଚୁରା ପଇସା ଦେଲା । ସେଥିରେ ଟଙ୍କାକିଆ ନୋଟ୍, ଆଠ ଅଣି, ଦଶ ପଇସି, ପାଞ୍ଚ ପଇସି—ସବୁ ଥିଲା । ବୁଢ଼ୀର ଥାଳିରେ ଖଣ୍ଡେ ଟଙ୍କାକିଆ ନୋଟ ପକାଇଦେବାକୁ ଯାଉଥିଲି, ଅଟକିଗଲି । ତା' ମୁହଁରେ ମୋର ସେଇ ଆଇଙ୍କ ତିରସ୍କାରର ସଙ୍କେତ ଯେପରି ଦେଖିପାରିଲି । ଡରି ଡରି ଦଶପଇସିଟିଏ ହାତ ବଢ଼ାଇ ପକାଇଲି । କମ୍ ହେଲା ନାହିଁ ତ ? ବେଶୀ ନୁହେଁ ତ ? ବୁଢ଼ୀ ଖୁସିମନରେ ଗ୍ରହଣ କରିବ ତ ? ମନ ଭିତରେ ଏକ ଦକା, ଏକ ଅନନୁଭୂତ ଶଙ୍କା । ବୁଢ଼ୀ ମୁହଁକୁ ଚାହିଁଲି । ବୁଢ଼ୀ ତା' ଥାଳିରେ ଦଶ ପଇସିଟିକୁ ଦେଖିନେଇ ଭରି ଖୁସି ହୋଇଉଠିଲା ଯେପରି । ମୋ ମୁହଁକୁ ଚାହିଁ ଟିକିଏ ହସିଲା । କି ସରଳ ଓ ପ୍ରସନ୍ନ ସେ ହସ ! ଜଗତର ସକଳ କଲ୍ୟାଣ ଓ ମମତା ସେଥିରୁ ଝରିପଡୁଛି । ଲଲାଟରେ ଅନୁଭବ କଲି ଯେପରି ଚିରନ୍ତନ ଜନନୀର ସ୍ନେହକରସ୍ପର୍ଶ ।

ଅଜାଣତରେ ମଥା ନୋଇଁଗଲା ।

ଗାଡ଼ି ଛାଡ଼ିଦେଲା ।........

ଗୋସ୍ୱାମୀ ପ୍ରେସ, କଟକ—୨

ଏହି ପୁସ୍ତକସନ୍ନିବେଶିତ ଗଳ୍ପଗୁଡିକ ମଧ୍ୟରୁ ଅଧିକାଂଶ ଝଙ୍କାରରେ ଏବଂ କେତେଗୋଟି ଅନ୍ୟାନ୍ୟ ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି । କେତେଗୋଟି ଗଳ୍ପ ମଧ୍ୟ କଟକ ଆକାଶବାଣୀ କେନ୍ଦ୍ରରୁ ପ୍ରସାରିତ ହୋଇଛି ।

'ସେତୁ' ଗଳ୍ପଟି ଏକ ବିଶିଷ୍ଟ ବଙ୍ଗଳା ପତ୍ରିକା 'ବୈତାନିକ' ରେ ଶ୍ରୀଯୁକ୍ତ ଶୈଳେଶ ଶର୍ମାଙ୍କ ଦ୍ୱାରା ବଙ୍ଗଭଷାରେ ଅନୁଦିତ ହୋଇ ପ୍ରକାଶିତ ହୋଇଥିଲା ।

'ପୁରୀବାହୁଡ଼ା' ଓ 'ରାୟ' ଗଳ୍ପ ଦୁଇଟିର ହିନ୍ଦି ରୂପାନ୍ତର ଆକାଶ-ବାଣୀରୁ ପ୍ରସାରିତ ହୋଇଛି ।

ଇଛା ଥିଲେ ମଧ୍ୟ ମୁଁ ଜାଣିଶୁଣି ଗଳ୍ପଗୁଡ଼ିକରେ କୌଣସି ପରିବର୍ତ୍ତନ ବା ପରିବର୍ଦ୍ଧନ କରିନାହିଁ ।

ଯେଉଁ ବନ୍ଧୁମାନେ ମୋ ପାଇଁ ମୋ ଗଳ୍ପଗୁଡ଼ିକୁ ବହୁ ଆୟାସ ସ୍ୱୀକାର କରି ବିଭିନ୍ନ ସୂତ୍ରରୁ ସଂଗ୍ରହ କରିଦେଇଛନ୍ତି ସେମାନଙ୍କ ନିକଟରେ ମୁଁ କୃତଜ୍ଞ ।

ଲେଖକ